## ଲେଖକଙ୍କର ଅନ୍ୟାନ୍ୟ ବହି

ଉପନ୍ୟାସ :

ପରାଗ

ଗଳ୍ପ ସଂଗ୍ରହ :

ଅସୀମ

ସ୍ୱପ୍ନସିଦ୍ଧି

ପାଷାଣର ପ୍ରାଣ

ବଡ଼ ମହାପୁରୁଷ

ପ୍ରକାଶ ପ୍ରତୀକ୍ଷାରେ :

ମହାପୁରୁଷ ବାଗ

ସମସ୍ତ ବହିର ପ୍ରକାଶକ:

ବିକାଶ ପ୍ରତିଷ୍ଠାନ

ଜୟପୁର, କୋରାପୁଟ

ଗଳ୍ପ ସଂଗ୍ରହ :

# ବଡ଼ ମହାପୁରୁଷ

ଲେଖକ :

ଶ୍ରୀ ବାମାଚରଣ ମିତ୍ର

ପ୍ରକାଶକ :

ବିକାଶ ପ୍ରତିଷ୍ଠାନ

ଜୟପୁର, କୋରାପୁଟ

ମୁଦ୍ରାକର :

ଶ୍ରୀ ରାମନାଥ ପଣ୍ଡା

ବିକାଶ ପ୍ରେସ୍

ଜୟପୁର, କୋରାପୁଟ



ପ୍ରଥମ ମୁଦ୍ରଣ — ୧୦୦୦

୧୯୬୩

ମୂଲ୍ୟ :

ସାଧାରଣ : ତିନି ଟଙ୍କା

ବନ୍ଧେଇ : ଚାରି ଟଙ୍କା

# ସମର୍ପଣ

ସାହିତ୍ୟିକ ବନ୍ଧୁ

ଶ୍ରୀ ପ୍ରାଣବନ୍ଧୁ କର

ଶ୍ରୀ ସୁରେନ୍ଦ୍ର ମହାନ୍ତି

ଶ୍ରୀ ମହାପାତ୍ର ନୀଳମଣି ସାହୁ

ଉଦାର ହୃଦୟ ସମୂହେଷୁ—

— ବାମାଚରଣ

# ବୈଜ୍ଞାନିକର ବିବାହ

Sir Arthur Conan Doyle ଙ୍କର
A physiologist's wife
କ୍ଷୁଦ୍ର ଗଳ୍ପର ଅନୁସରଣରେ—

**ପ୍ରଥମ ଅଙ୍କ । ପ୍ରଥମ ଦୃଶ୍ୟ:**

**ଅ**ଧ୍ୟାପକ ଗରୁଡ଼ଧ୍ୱଜଙ୍କ ଭୋଜନକକ୍ଷ । ଗୋଟିଏ ସାନ ଘର । ଘରର ପଶ୍ଚିମ ପଟକୁ ଦୁଇଟି ଦୁଆର । ଗୋଟିଏ ଦୁଆର ବାଟେ ଦୋମହଲାକୁ ଯିବାର ସିଡ଼ି ଦିଶୁଛି । ଅନ୍ୟ ଦୁଆରଟି ରୋଷେଇଶାଳକୁ ଯିବାରାସ୍ତା । ଘର ମଝିରେ ଗୋଟିଏ ବଡ଼ ଟେବୁଲ ଚାରପଟେ ଅନେକଗୁଡ଼ିଏ ଚୌକି । ଦୁଇଟି ଦୁଆର ମଝିରେ କାନ୍ଥରେ ଝୁଲୁଛି ଆଇନ୍‌ଷ୍ଟାଇନ୍‌ଙ୍କର ଗୋଟିଏ ବଡ଼ ପ୍ରତିକୃତି । ପ୍ରତିକୃତି ତଳକୁ ଗୋଟିଏ କାନ୍ଥ ଘଡ଼ି ଏବଂ ତା ତଳକୁ ଥାକ । ଥାକର କବାଟ ଲୁହା ଜାଲରେ ତିଆରି । ଜାଲବାଟେ କପ୍, ଗିଲାସ ଆଦି ନାନା ଉପକରଣ ଦିଶୁଛି ।

ପୂର୍ବଆଡ଼କୁ ଅର୍ଥାତ୍ ଦର୍ଶକଙ୍କ ଆଡ଼କୁ ମୁହଁ କରି ବସିଛନ୍ତି ସୁମିତ୍ରା ଦେବୀ । ସୁମିତ୍ରା ଦେବୀ ସୁନ୍ଦରୀ । ବୟସ ପ୍ରାୟ ୨୫ । ଟଣା ଟଣା ବଡ଼ ବଡ଼ ଆଖି । ଆଖି ଯୋଡ଼ିକରେ ବୁଦ୍ଧିର ଦୀପ୍ତି ସତ୍ତ୍ୱେ

ବେଦନା ପରିସ୍ଫୁଟ । ସୁମିତ୍ରା ଦେବୀ ଦର୍ଶନରେ ଏମ. ଏ. ପାଶ୍ କରି ବର୍ତ୍ତମାନ ମହିଳା କଲେଜରେ ଅଧ୍ୟାପିକା । ତାଙ୍କର ବେଶଭୂଷା ଅତି ସାଧାରଣ କିନ୍ତୁ ରୁଚିସମ୍ପନ୍ନ ।

ସୁମିତ୍ରା ଦେବୀ ଚିନ୍ତିତା ଭାବରେ ବାରମ୍ବାର କାନ୍ଥ ଘଡ଼ିକୁ ଅନାଉଛନ୍ତି । ଘଡ଼ିରେ ଢ଼ିଂ କରି ୭ଟା ବାଜିଲା । ସୁମିତ୍ରା ଦେବୀ ଭ୍ରୂକୁଞ୍ଚନ କରି ଥରେ ଘଡ଼ି ଆଡେ ଚାହିଁଲେ ଏବଂ ଗୋଟିଏ ଦୀର୍ଘ ନିଶ୍ୱାସ ପକାଇ ସାମନାରେ ଥୁଆ ହୋଇଥିବା ଚାହା ଟ୍ରେ ଓ ଜଳଖିଆ ଆଡେ ଚାହିଁଲେ । ତା ପରେ ଚୌକିରୁ ଉଠି ସେ ସିଡ଼ି ଆଡକୁ ଗଲେ ଏବଂ କଅଣ ଭାବି ପୁଣି ଆସି ବସିଲେ ।

ଗରୁଡ଼ଧ୍ୱଜ ବାବୁ ଏ ପର୍ଯ୍ୟନ୍ତ ନିଦରୁ ଉଠି ନାହାନ୍ତି ଦେଖି ସେ ଆଶ୍ଚର୍ଯ୍ୟ ହେଲେ । ପିତା ମାତାଙ୍କ ମୃତ୍ୟୁ ପରେ ସୁମିତ୍ରା ଦେବୀହିଁ ଏ ଗୃହର ଏକମାତ୍ର କର୍ତ୍ତ୍ରୀ, ଆଜିକୁ ପ୍ରାୟ ଦଶବର୍ଷ ହେବ । ଏ ଦଶବର୍ଷ ମଧ୍ୟରେ ଏପରି ଅଭାବନୀୟ ଘଟଣା କେବେହେଁ ଘଟିନାହିଁ । ଗରୁଡ଼ଧ୍ୱଜ ବାବୁ ଠିକ୍ କଣ୍ଟାଏ କଣ୍ଟାଏ ୭ଟା ବାଜିଲେ ଜଳଖିଆ ଖାଇବାକୁ ଆସନ୍ତି । ସୁମିତ୍ରା ଦେବୀଙ୍କୁ କେବେହେଁ ଘଣ୍ଟା ବଜାଇବାର ଦରକାର ପଡ଼ିନାହିଁ । ସୁମିତ୍ରା ଦେବୀ କଲିଂ ବେଲଟି ହାତରେ ଧରି ଭାବିଲେ ବଜାଇବେ କି ନାହିଁ । ପୁଣି ଭାବିଲେ ଏହା ହୁଏତ ଭୁଲ ହୋଇପାରେ । ଗରୁଡ଼ଧ୍ୱଜ ବାବୁ କଦାପି ଭୁଲ ସହ୍ୟ କରି ପାରନ୍ତି ନାହିଁ ଭାବି ପୁଣି ସେ ତାକୁ ରଖି ଦେଲେ ଏବଂ ସିଡ଼ି ଦୁଆରକୁ ଚାହିଁ ଦୀର୍ଘ ନିଶ୍ୱାସ ପକାଇଲେ ।

ଏହି ସମୟରେ ସିଡ଼ିରେ ପଦଶବ୍ଦ ଶୁଣାଗଲା । ସୁମିତ୍ରା ଦେବୀଙ୍କ ମୁହଁରୁ ଚିନ୍ତାର ଭାବ ଚାଲିଗଲା । ସେ ଥାକରୁ ଜଳଖିଆ ଆଣି ପ୍ଲେଟରେ ସଜାଇବାକୁ ଲାଗିଲେ । ଗରୁଡ଼ଧ୍ୱଜ ବାବୁ ଡ୍ରେସିଂ

କୋଠରେ ଫିତା ବାନ୍ଧୁ ବାନ୍ଧୁ ପ୍ରବେଶ କଲେ । ସେ ଦେଖିବାକୁ ସୁମିତ୍ରା ଦେବୀଙ୍କ ଭଳି । ଗୌର ସୁନ୍ଦର । ପ୍ରଶସ୍ତ ଲଲାଟ । ଦୀର୍ଘ କେଶ ଅବିନ୍ୟସ୍ତଭାବରେ ପଛକୁ ପଡ଼ିଛି । ତାଙ୍କର ଦୀର୍ଘ ବଳିଷ୍ଠ ଆକାର ଏବଂ ବୁଦ୍ଧିଦୀପ୍ତ ଆଖି ଦେଖିବା ମାତ୍ରକେ ମନେ ହୁଏ ଏପରି ଲୋକ କୋଟିକେ ଗୋଟିଏ । କିନ୍ତୁ ତାଙ୍କର ଆଖିତଳେ ମଧ୍ୟ କାଳିମା । ତାଙ୍କର ବୟସ ପ୍ରାୟ ୪୦ । ଏହି ବୟସରେ ସେ ପୃଥିବୀର ବୈଜ୍ଞାନିକ ସମାଜରେ ଖ୍ୟାତି ଲାଭ କରି ସାରିଛନ୍ତି । କ୍ରମବିକାଶ (Evolution) ବିଷୟରେ ତାଙ୍କର ଦୁଇଟି ମୌଳିକ ଗବେଷଣା ପୂର୍ଣ୍ଣ ପ୍ରବନ୍ଧ ପୃଥିବୀର ନାନା ଭାଷାରେ ଅନୂଦିତ ହୋଇଛି ଏବଂ ଏଥିପାଇଁ ସେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରୁ ଡକ୍ଟର ଉପାଧି ପାଇଛନ୍ତି ।

ଗରୁଡ଼ଧ୍ୱଜ ବାବୁ ଗମ୍ଭୀର ଭାବରେ ଗୃହରେ ପ୍ରବେଶ କରି ଚିନ୍ତାମଗ୍ନ ଭାବରେ ଖାଇବାକୁ ଲାଗିଲେ । ରୋଷେଇ ଘର ଦୁଆର ବାଟେ ଦୁଇଜଣ ଦାସୀଙ୍କ କଳହ ଜନିତ ଗୋଳମାଳ ଶୁଭିଲା ।

ଗରୁଡଧ୍ୱଜ: (ଗୃହାପାନ ସ୍ଥଗିତ ରଖି) ସୁମି, ତୁମର ଦାସୀଗୁଡ଼ିକ ଭାରି କଳହପ୍ରିୟ ।

ସୁମିତ୍ରା: ହଁ ଭାଇ, ହୀରା ଭାରି ପାଟି କରେ । ମୁଁ ତାକୁ ସାବଧାନ କରିଦେବି ।

ଗରୁଡ଼ଧ୍ୱଜ: (ଗୃହା ପାନକରି) ମନୁଷ୍ୟ ଯେତେବେଳେ ପ୍ରଥମେ କଥା କହିବାକୁ ଶିଖିଲା, ସେତେବେଳେ ସଭ୍ୟତାର ପ୍ରଥମ ସୋପାନ ଗଢ଼ାହେଲା । କଥା କହିବାର କ୍ଷମତାକୁ ମନୁଷ୍ୟ ଯେତେବେଳେ ସଂଯମ କରିବାକୁ ଶିଖିଲା ସେତେବେଳେ ସଭ୍ୟତାର ଦ୍ୱିତୀୟ ସୋପାନ ଗଢ଼ାହେଲା । ପୁରୁଷମାନେ ସଭ୍ୟତାର ଦ୍ୱିତୀୟ ସୋପାନରେ । ନାରୀ

ପ୍ରଥମ ସୋପାନରେ ହିଁ ଅଛୁ ।

(ଗରୁଡ଼ଧ୍ୱଜ ବାବୁ ଆଖି ବୁଜି କଅଣ ଚିନ୍ତା କରିବାକୁ ଲାଗିଲେ)

ସୁମିତ୍ରା: ମୁଁ ତ ବେଶୀ କଥା ବୁଝେ ନାହିଁ, ଭାଇ ।

ଗରୁଡ଼ଧ୍ୱଜ: ନା, ଭଉଣୀ, (ସ୍ମିତହାସ୍ୟ କରି) ତୁମେ ଅନେକ ବିଷୟରେ ପୁରୁଷର ସମକକ୍ଷ ହେବାକୁ ଯାଉଚ ।

ସୁମିତ୍ରା: (ଗରୁଡ଼ଧ୍ୱଜଙ୍କ ଆଡ଼େ କଟାକ୍ଷ ପାତ କରି) ତୁମର ଆଜି ଏତେ ଡେରି ହେଲା ଯେ ? ବାପା ବୋଉ ସଂସାର ଛାଡ଼ିଯିବା ବେଳକୁ ମୋର ବୟସ ପନ୍ଦର । ସେଦିନୁ ଆଜିକୁ ଦଶବର୍ଷ ହେବ ମୁଁ ତ ଦିନେ ତୁମର ଏପରି ବ୍ୟତିକ୍ରମ ଦେଖିନାହିଁ ।

ଗରୁଡ଼ଧ୍ୱଜ: ହଁ ସୁମି । କାଲି ରାତିରେ ଭଲ ଶୋଇ ପାରିନାହିଁ । ମସ୍ତିଷ୍କର ଭାବନା କେନ୍ଦ୍ରଗୁଡ଼ିକ ଉପରେ ଅସ୍ୱାଭାବିକ ଚାପ ପଡ଼ିବାରୁ ଶାରୀରିକ ସାଧାରଣ କାର୍ଯ୍ୟରେ କିଞ୍ଚିତ ବିଶୃଙ୍ଖଳା ସୃଷ୍ଟି ହୋଇଥିଲା । ମୁଁ ପଅର ଦିନଠାରୁ କିଞ୍ଚିତ ଚିନ୍ତାରେ ପଡ଼ିଚି ।

(ସୁମିତ୍ରା ମୁହଁ ଟେକି ଆଶ୍ଚର୍ଯ୍ୟ ହୋଇ ଭାଇଙ୍କ ଆଡ଼କୁ ଅନାଇଲେ । ଗରୁଡ଼ଧ୍ୱଜଙ୍କ ପକ୍ଷରେ ଏହା ଗୋଟିଏ ଆଶ୍ଚର୍ଯ୍ୟ ଘଟଣା । ସେ ଚିରଦିନ ନିୟମାନୁବର୍ତ୍ତୀ । ଦଶବର୍ଷ ମଧ୍ୟରେ ନିୟମର ଟିକିଏ ଏ ପାଖ ସେ ପାଖ ହେବାର ତାଙ୍କୁ ସେ ଦେଖି ନାହାନ୍ତି । କଲେଜରୁ ଘର ଏବଂ ଟିକିଏ ଭ୍ରମଣ ପରେ ନିଜର ଲାବୋରେଟୋରି ଓ ଲାଇବ୍ରେରିରେ ରାତି ଦଶଟା ପର୍ଯ୍ୟନ୍ତ । ତା ପରେ

ଭୋଜନ ଏବଂ ଶୟନ । ତା ପରଦିନ ଠିକ୍ ସକାଳ ୭ ଟା ସମୟରେ ଜଳଖିଆ ଓ ପୁଣି ଅଧ୍ୟୟନ ଏବଂ ଦଶଟା ବେଳେ କଲେଜ । ଗରୁଡ଼ଧ୍ୱଜ ଥାଆନ୍ତି ଜ୍ଞାନ-ବିଜ୍ଞାନ ରାଜ୍ୟରେ, ଏ ପୃଥିବୀରେ ନୁହଁ । ତାଙ୍କ ମୁହଁରୁ ବାହାରିଲା "ଆଶ୍ଚର୍ଯ୍ୟ")

ଗରୁଡ଼ଧ୍ୱଜ: ତୁମେ ଆଶ୍ଚର୍ଯ୍ୟ ହେଉଛ ସୁମି ? ହବାର କଥା । ମୁଁ ମଧ୍ୟ ଆଶ୍ଚର୍ଯ୍ୟ ହୋଇଛି । ଏ ସ୍ନାୟୁବିକ ଦୁର୍ବଳତା ଯେ ମୋତେ ଆକ୍ରମଣ କରିବ ମୁଁ ଆଦୌ ଭାବି ନ ଥିଲି । ସବୁ ଚିନ୍ତାର କାରଣ ସ୍ନାୟୁରୁହିଁ ଜାତ । ମୁଁ ବିବାହ କରିବାକୁ ଇଚ୍ଛା କରିଛି ।

ସୁମିତ୍ରା: (ଚାହା ପିଆଲି ତଳେ ରଖି ଆଶ୍ଚର୍ଯ୍ୟ ଭାବରେ କିଛିକ୍ଷଣ ରହି) ମିସ୍ ସୁଜାତା ବୋଷଙ୍କୁ ନିଶ୍ଚୟ···

ଗରୁଡ଼ଧ୍ୱଜ: (ଆନନ୍ଦିତ ଭାବରେ) ବାଃ, ନାରୀର ଅନୁମାନ କରିବାର ସହଜାତ ଶକ୍ତି ତୁମର ଖୁବ୍ ପ୍ରଖର ଦେଖୁଛି । ମୁଁ ତାଙ୍କରି କଥା କହୁଥିଲି ।

ସୁମିତ୍ରା: କିନ୍ତୁ ତାଙ୍କ ବିଷୟରେ ତୁମେ କେତେ ଠିକଏ ବା ଜାଣ ! ବିରୁପାକ୍ଷ ବାବୁଙ୍କ ଘରେ ମଧ୍ୟ ତାଙ୍କ ବିଷୟରେ ବୋଧ-ହୁଏ ବିଶେଷ ଜାଣନ୍ତି ନାହିଁ । ତାଙ୍କ ଘରେ ସେ କେତେ ମାସ ହେବ ଅତିଥି ମାତ୍ର । ଥରେ ଭଲ କରି ଅନୁସନ୍ଧାନ କରି ବିରୁପାକ୍ଷ ବାବୁଙ୍କୁ ସବୁ ପଚାରି···

ଗରୁଡ଼ଧ୍ୱଜ: (ହାତ ହଲାଇ) କୌଣସି ସିଦ୍ଧାନ୍ତରେ ପହଞ୍ଚିବାକୁ ବୈଜ୍ଞାନିକର ଅନେକ ସମୟ ଲାଗେ, କିନ୍ତୁ ଥରେ ସିଦ୍ଧାନ୍ତରେ ପହଞ୍ଚିଲେ ସେଥିରେ ତାର ଆଉ ଦ୍ୱିଧା

ନ ଥାଏ । ମୁଁ ଏ ବିଷୟରେ ଅନେକ ଚିନ୍ତା କରିଚି । ମୋର ଏ ବିଷୟରେ କଅଣ କରିବା ଉଚିତ ଅନୁଚିତ ଏ ବିଷୟରେ ବିରୂପାକ୍ଷ କାକ୍କାଙ୍କ ଅନ୍ୟ କାହାର କିଛି କହିବାର ନାହିଁ । ବିବାହ ଗୋଟିଏ ଅତି ସାଧାରଣ ଘଟଣା ଏବଂ ସ୍ୱାଭାବିକ ପରିଣତି । ମୁଁ ମୋର ଗବେଷଣାରେ ବ୍ୟସ୍ତ ଥିବା ଯୋଗୁଁ ଏ ପର୍ଯ୍ୟନ୍ତ ମୋ ନିଜ ବିଷୟରେ ଭାବିବାର ଅବକାଶ ପାଇ ନ ଥିଲି । କିନ୍ତୁ ବର୍ତ୍ତମାନ ଜଣେ ଉପଯୁକ୍ତ ସହଧର୍ମିଣୀ ପାଇବାର ସୁଯୋଗ ତ୍ୟାଗ କରିବାର ଆଉ କୌଣସି କାରଣ ନାହିଁ । ତେଣୁ···

**ସୁମିତ୍ରା:** ବିବାହର ସବୁ କଥା ଠିକ୍ ହୋଇଯାଇଛି ?

**ଗରୁଡ଼ଧ୍ୱଜ:** ନା, ନା । ମାତ୍ର କାଲି ମୁଁ ସୁଜାତା ଦେବୀଙ୍କୁ କହିଚି, ମୁଁ ବର୍ତ୍ତମାନ ପୁରୁଷ ଓ ନାରୀର ସ୍ୱାଭାବିକ ବନ୍ଧନକୁ ବରଣ କରିବାକୁ ପ୍ରସ୍ତୁତ । ଆଜି କଲେଜ ଲେକ୍‌ଚର ପରେ ମୁଁ ବିରୂପାକ୍ଷ ଘରକୁ ଯିବି ଏବଂ ମୋର ପ୍ରସ୍ତାବ ସେ ଅନୁମୋଦନ କରିଛନ୍ତି କି ନା ବୁଝିବି । କିନ୍ତୁ ମୋର ମନେ ହେଉଚି ତୁମେ ଏଥିର ଅନୁମୋଦନ କରୁନାହଁ ?

**ସୁମିତ୍ରା:** (ମୁହଁ ତଳକୁ କରି ମନର ଭାବ ଲୁଚାଇବାକୁ ଚେଷ୍ଟା କରି) ନା, ଭାଇ, ନା । ତୁମ କଥା ତୁମେ ଭଲ ବୁଝ । ମୁଁ ଏଥିରେ ଆନନ୍ଦିତ । ବାପା ବୋଉ ତ ହତାଶ ହୋଇ ଏ ସଂସାର ଛାଡ଼ିଗଲେ । ଏତେଦିନକେ, ତ୍ରିଂଶ ବର୍ଷରେ, ଯା ହଉ ତୁମ ମନ ବଦଳିଲା । ମୁଁ ଖୁବ୍ ଖୁସି । (ଉପରକୁ

ଗୃହିଁ ଭଗବନାଙ୍କ ଉଦ୍ଦେଶ୍ୟରେ ପ୍ରଣାମ କର) ଜୀବନର
ଏଇ ସନ୍ଧିକ୍ଷଣରେ କେବଳ ତାଙ୍କର କୃପା ଛଡ଼ା ଆଉ
ଗତି ନାହିଁ । ଏକଥା···

ଗରୁଡ଼ଧ୍ୱଜ: (ହାତ ହଲାଇ) ତୁମେ କଲେଜରେ ଦର୍ଶନ ପଢ଼ାଇ ପଢ଼ାଇ ହୁଏତ ଭଗବାନକୁ ଗୋଟାଏ ସଂସ୍କାର ଭଳି ଜ୍ଞାନ କରୁଥିବ । କିନ୍ତୁ ମୁଁ ଏ ପର୍ଯ୍ୟନ୍ତ ଭଗବାନଙ୍କ ଅସ୍ତିତ୍ୱର କୌଣସି ପ୍ରମାଣ ପାଇନାହିଁ । ପ୍ରମାଣ ପାଇଲେ ମୁଁ ମାନିବାକୁ ବାଧ୍ୟ । ବର୍ତ୍ତମାନ କିନ୍ତୁ ନିଛକ ଅନୁମାନ, ଆବେଗ ବା ଆପ୍ତବାକ୍ୟ ଉପରେ ନିର୍ଭର କରି ତାଙ୍କର ଅସ୍ତିତ୍ୱର ସତ୍ୟତା ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହଁ ।

ସୁମିତ୍ରା: (ଦୀର୍ଘ ନିଶ୍ୱାସ ପକାଇ) ବିଶ୍ୱାସରେ ଭଗବାନ ମିଳିବେ, ତର୍କରେ ନୁହଁ । ତୁମର ସେ ବିଶ୍ୱାସ ନାହିଁ ।

ଗରୁଡ଼ଧ୍ୱଜ: ପରନ୍ତୁ, ମୁଁ ବିଶ୍ୱାସ କରେ ଯେ କ୍ରମବିକାଶର ମହାନ୍ ଶକ୍ତି ମାନବ ଜାତିକୁ କ୍ରମଶଃ ଉଚ୍ଚରୁ ଉଚ୍ଚତର ସ୍ତରକୁ ନେଇଯାଉଛି ।

ସୁମିତ୍ରା: ତୁମେ କିଛି ବିଶ୍ୱାସ କରନା ।

ଗରୁଡ଼ଧ୍ୱଜ: (ସ୍ମିତ ହାସ୍ୟ କରି) ନା, ସୁମି, ନା । ମୁଁ ସୃଷ୍ଟିର ଅଦ୍ଭୁତ କ୍ରିୟା ବିଶ୍ୱାସ କରେ । ବିଶ୍ୱାସ କରେ କିପରି ପ୍ରାଣପଙ୍କ ବା protoplasm ରୁ ପ୍ରାଣକଣା ବା Cell ଜାତ ହେଲା ଏବଂ କିପରି ସେହି ପ୍ରାଣକଣା ନିଜକୁ ଦୁଇ ଭାଗ କରି ପୁରୁଷ ଓ ନାରୀ ସୃଷ୍ଟି କଲା ।

ସୁମିତ୍ରା: (ମୁଣ୍ଡ ହଲାଇ ଅସ୍ୱୀକାର କରି) ସେ କଥା ଥାଉ ।

ଗରୁଡ଼ଧ୍ୱଜ: ହଁ, ସେ କଥା ଥାଉ । ଆମେ ଆଲୋଚ୍ୟ ବିଷୟରୁ ଦୂରକୁ ଚାଲିଯାଉଚୁ । [ଅଳ୍ପହସି] ମୋର ଅନୁମାନ ଯଦି ସତ୍ୟ ହୁଏ ତେବେ ଏ ଘରେ ଆଉ ଗୋଟିଏ ବିବାହ ଅନୁଷ୍ଠିତ ହେବାକୁ ମଧ୍ୟ ଯାଉଚି ?

ସୁମିତ୍ରା: [ତଳକୁ ମୁହଁ ପୋତି ଗୋଟିଏ ଦୀର୍ଘ ନିଶ୍ୱାସ ପକାଇଲେ]

ଗରୁଡ଼ଧ୍ୱଜ: ଜ୍ୟୋତିର୍ମୟ ଘୋଷ—

ସୁମିତ୍ରା: (ବ୍ୟଥିତ ଭାବରେ) ସେ କଥା ଥାଉ ଭାଇ, ସେ କଥା ଥାଉ ।

ଗରୁଡ଼ଧ୍ୱଜ: ଜ୍ୟୋତି ମୋର ପ୍ରିୟ ଛାତ୍ର । ବର୍ତ୍ତମାନ ସେ କଲିକତା କଲେଜର ଅଧ୍ୟାପକ । ତାର ଭବିଷ୍ୟତ ଯେ ଉଜ୍ଜ୍ୱଳ ଏଥିରେ ମୋର କୌଣସି ସନ୍ଦେହ ନାହିଁ । ସେ ବର୍ତ୍ତମାନ ଗୋଟିଏ ମୌଳିକ ଗବେଷଣା କରୁଚି । ତାହା ଶେଷ ହେଲେ ତାର ଖ୍ୟାତି ପୃଥିବୀ ବ୍ୟାପିଯିବ । କ୍ରମବିକାଶ ବିଷୟରେ ସେ ଗବେଷଣା ଗୋଟିଏ ନୂତନ ଚିନ୍ତାଧାରା ଦେବ ।

(ଗରୁଡ଼ଧ୍ୱଜ ନୀରବ ରହି ସୁମିତ୍ରା ଆଡ଼େ ଚାହିଁଲେ । ସୁମିତ୍ରା ଦେବୀଙ୍କ ନିଶ୍ୱାସ ଘନ ଘନ ବହିବାକୁ ଲାଗିଲା)

ଗରୁଡ଼ଧ୍ୱଜ: ଜ୍ୟୋତିର୍ମୟ ତାର ଗବେଷଣା ପୂର୍ଣ୍ଣ କରିବା ପାଇଁ ଆଉ ଥରେ ବିଲାତ ଯାଉଚି । ବିଲାତ ଯିବା ପୂର୍ବରୁ ସେ ମୋ ସହିତ ଦେଖା କରିବାକୁ ଆଜି ଆସୁଚି । ସେ ବିଲାତ ଅବିବାହିତ ରହି ଯିବ ନା ବିବାହ କରିଯିବ ଏହା ବର୍ତ୍ତମାନ ତୁମ ଉପରେ ନିର୍ଭର କରେ ।

ମୋର ମତ ଯଦି ଶୁଣ, ତେବେ କହିବି, ଜ୍ୟୋତିକୁ ସ୍ୱାମୀ ରୂପେ ପାଇବାକୁ ତୁମଭଳି ଉଚ୍ଚ ଶିକ୍ଷିତା ଯେ କୌଣସି ନାରୀ ଚାହିଁବ ।

ସୁମିତ୍ରା: କିନ୍ତୁ ସେ ମୋତେ ଏ ପର୍ଯ୍ୟନ୍ତ କିଛି କହିନାହାନ୍ତି ।

ଗରୁଡ଼ଧ୍ୱଜ: କହିବ, କହିବ । ମନୁଷ୍ୟ କଥା କହିବାକୁ ଶିଖିଥିଲେ ମଧ୍ୟ ମୌଳିକ ଆବେଗଗୁଡ଼ିକ ପ୍ରକାଶ କରିବାକୁ ଏ ପର୍ଯ୍ୟନ୍ତ ଉପଯୁକ୍ତ ଭାଷା ପାଇନାହିଁ । ସେ ଏ ପର୍ଯ୍ୟନ୍ତ ସେଇ ପୁରାତନ ଇଙ୍ଗିତ ଉପରେ ନିର୍ଭର କରେ । ମୁଁ ବୁଝି-ପାରୁଛି ସେ ତୁମକୁ ଭଲ ପାଏ ।

ସୁମିତ୍ରା: (ଲଜ୍ଜାରେ ଆରକ୍ତିମ ହୋଇ ଉଠିଯିବାକୁ ବସିଲେ) ।

ଗରୁଡ଼ଧ୍ୱଜ: ତୁମର Vasomotor ପ୍ରଣାଳୀ ଉତ୍ତେଜିତ । Arteriol ଶଙ୍କୁଚିତ । ବିଚଳିତା ହୁଅନା । ଗୋଟିଏ ଗାଡ଼ି ଆମ ଦୁଆର ମୁହଁରେ ରହିଲା ବୋଧହୁଏ ? ହୁଁ । ଅତିଥିର ସତ୍କାର କରିବାର ତ୍ରୁଟି କରିବ ନାହିଁ । ମୁଁ ଯାଏଁ ।



## ଦ୍ୱିତୀୟ ଦୃଶ୍ୟ :

(ମଧ୍ୟାହ୍ନ । ବିରୂପାକ୍ଷଙ୍କ ଉଦ୍ୟାନ । ଗରୁଡ଼ଧ୍ୱଜ କଲେଜ ପୋଷାକରେ ଫାଟକ ବାଟେ ଉଦ୍ୟାନକୁ ପ୍ରବେଶ କଲେ । ଉଦ୍ୟାନର ଗୋଟିଏ କୁଞ୍ଜ ତଳେ ଗୋଟିଏ କାଠ ବେଞ୍ଚ ଉପରେ ସୁଜାତା ଦେବୀ ଉପବିଷ୍ଟା । ସୁଜାତା ସୁନ୍ଦରୀ, ଚପଳା । ବୟସ ପ୍ରାୟ ପଚିଶି । ହାତରେ ଖଣ୍ଡେ ବହି ଖୋଲାହୋଇ ଧରାହୋଇଛି କିନ୍ତୁ ସେ ଅନୁଚ୍ଚସ୍ୱରରେ ଗୋଟିଏ ଗୀତ ଗାଉ ଅଛନ୍ତି । ଗରୁଡ଼ଧ୍ୱଜ ତାଙ୍କ

ପଛପଟେ ଫାଟକ ବାଟେ ପ୍ରବେଶ କଲେ ଏବଂ ଗୀତ ଶେଷ ହେବା ପର୍ଯ୍ୟନ୍ତ ଅପେକ୍ଷା କଲେ । ଗୀତ ଶେଷ ପରେ ସୁଜାତା ଗରୁଡ଼ଧ୍ୱଜଙ୍କୁ ଦେଖି ହସିଲେ । ଗରୁଡ଼ଧ୍ୱଜ ଆସି ତାଙ୍କ ନିକଟରେ ବେଞ୍ଚ ଉପରେ ବସିଲେ) ।

ସୁଜାତା: [ହସି] ନମସ୍କାର । ବିରୁପାକ୍ଷ ବାବୁଙ୍କୁ ଦେଖାକରିବାକୁ ଆସିଅଛନ୍ତି ବୋଧହୁଏ ? ଯାଆନ୍ତୁ, ସେ ଘରେ ଅଛନ୍ତି ।

ଗରୁଡ଼ଧ୍ୱଜ: ନାଁ । ମୁଁ ତୁମ ସହିତ ଦେଖା କରିବାକୁ ଆସିଛି ।

ସୁଜାତା: କିନ୍ତୁ ପ୍ରଥମେ ତାଙ୍କୁ ଥରେ ଦେଖା କରି ଆସିବା ଉଚିତ ହେବ ନାହିଁକି ?

ଗରୁଡ଼ଧ୍ୱଜ: ମୁଁ ତା ସହିତ ଯେତେବେଳେ ଦେଖା କରିବାକୁ ଆସି ନାହିଁ, ସେତେବେଳେ ଅଯଥା ସମୟ ନଷ୍ଟ କରିବାକୁ ମୁଁ ଚାହେଁ ନା ।

ସୁଜାତା: ମୋର ବହୁତ ଭାଗ୍ୟ । କିନ୍ତୁ କଲେଜର ଛାତ୍ରମାନେ...... ।

ଗରୁଡ଼ଧ୍ୱଜ: କଲେଜରେ ଆଉ କ୍ଲାସ ଥିଲେ ତାହା ଛାଡ଼ି ମୁଁ ଆସି ନ ଥାନ୍ତି । ତୁମେ କି ବହି ପଢୁଥିଲ ?

ସୁଜାତା: Haleଙ୍କର Matter and Life.

ଗରୁଡ଼ଧ୍ୱଜ: (ଭ୍ରୂକୁଞ୍ଚନ କରି) ହେଲ୍ ? ହେଲ୍ !!!

ସୁଜାତା: ମୁଁ ଜାଣେ ତାଙ୍କ ସହିତ ତୁମର ମତ ମିଳେ ନାହିଁ ।

ଗରୁଡ଼ଧ୍ୱଜ: ମୋର ମତ ମିଳିବା ନ ମିଳିବା କଥା ଉଠୁନାହିଁ । ମୁଁ ତ ଜ୍ଞାନମହାସାଗର କୂଳରେ ଛୁଡ଼ା ହୋଇ ଖଣ୍ଡେ ଅଧେ ଖଣ୍ଡ ବାଲିଗରଡ଼ା ଗୋଟାଇଚି ମାତ୍ର । ଆଧୁନିକ ବିଜ୍ଞାନ ତାଙ୍କର ମତ ସ୍ୱୀକାର କରେ ନାହିଁ । ତାଙ୍କର ପର୍ଯ୍ୟବେକ୍ଷଣ

କରିବାର ଶକ୍ତି ଅଛି କିନ୍ତୁ ଯୁକ୍ତି କରିବାର ଶକ୍ତି ନାହିଁ । ମୁଁ ତାଙ୍କ ବହି ପଢ଼ିବାକୁ କାହାରିକୁ ଉପଦେଶ ଦେବି ନାହିଁ କାରଣ ତାହା ଚିନ୍ତାକୁ ଭୁଲ ମାର୍ଗରେ ଚାଳିତ କରିବ ।

ସୁଜାତା: (ବିଦ୍ରୂପ ଭଙ୍ଗିରେ) ତାହାହେଲେ ମୋତେ Nature's Chronicle ପତ୍ରି Hale ଙ୍କର ପ୍ରବନ୍ଧ ଏଡ଼ାଇବାକୁ ହେବ ଦେଖୁଛି ।

ଗରୁଡଧ୍ୱଜ: ନାଁ, ସେ ବହିର ଲେଖକ ମୁଁ ହେଲେ ମଧ୍ୟ ସେ ବହି ପଢ଼ିବାକୁ ମଧ୍ୟ କାହାରିକୁ ଉପଦେଶ ଦେବି ନାହିଁ କାରଣ ସେ ବହିରେ ଅନେକ ଭ୍ରମ ଅଛି । ତୁମେ ଯଦି ଏ ବିଷୟରେ ପ୍ରକୃତରେ କିଛି ଜାଣିବାକୁ ଚାହଁ ତେବେ Huxley କିମ୍ବା ସାଂଖ୍ୟ ଦର୍ଶନ ପଢ଼ିବା ଉଚିତ ।

(ଦୁହେଁ କିଛିକ୍ଷଣ ନୀରବ ରହିଲେ । ଗଛ ଉପରେ କୋଇଲି ଦୁଇ ତିନଥର ଅଧୀର ଭାବରେ ରାବ ଉଠେଇଲା ।)

ଗରୁଡଧ୍ୱଜ: ମୁଁ କାଲି ଯାହା କହିଥିଲି ସେ ବିଷୟରେ କିଛି ସିଦ୍ଧାନ୍ତ କରିଚ ? (ସୁଜାତା ନୀରବ ରହିଲେ) ମୁଁ ତମକୁ ଶୀଘ୍ର ସିଦ୍ଧାନ୍ତ କରିବାକୁ କହୁନି । ମୁଁ ଜାଣେ ଏହା ଜୀବନରେ ଗୋଟିଏ ସମସ୍ୟା । ମୁଁ ନିଜେ ସିଦ୍ଧାନ୍ତ କରିବାକୁ ଦୁଇରାତି ଜାଗିଚି । ମୁଁ ଭାବପ୍ରବଣ ନୁହଁ ତୁମେ ଜାଣ । କିନ୍ତୁ ମୁଁ ସ୍ୱୀକାର କରିବାକୁ ବାଧ୍ୟ ଯେ ତୁମେ ନିକଟରେ ଥିଲେ ମୁଁ ସୃଷ୍ଟିର ଅନାଦିକାଳର ମହାଶକ୍ତି, ଯେଉଁ ଶକ୍ତି ପୁରୁଷ ଓ ନାରୀକୁ ପରସ୍ପର ପ୍ରତି ଆକୃଷ୍ଟ କରାଏ, ତାହା ଅନୁଭବ କରେ ।

ସୁଜାତା: (ହସି) ତାହାହେଲେ ତୁମେ ପ୍ରେମର ଶକ୍ତି ସ୍ୱୀକାର କର ?

ଗରୁଡଧ୍ୱଜ: ବାଧ୍ୟ ।

ସୁଜାତା: ତାହାହେଲେ ନିଶ୍ଚୟ ଆତ୍ମାର ଅସ୍ତିତ୍ୱ ସ୍ୱୀକାର କରିବ ?

ଗରୁଡଧ୍ୱଜ: ଆତ୍ମାର ଭିତ୍ତି ମନୁଷ୍ୟର କଳ୍ପନାରେ କିମ୍ବା ବାସ୍ତବତା ଉପରେ, ସେ ବିଷୟରେ କୌଣସି ବୈଜ୍ଞାନିକ ଗବେଷଣା ହୋଇନାହିଁ । କିନ୍ତୁ ପ୍ରେମ ଓ ଜୀବନ ଏ ଦୁହିଁଙ୍କର ଭିତ୍ତି ଯେ ପ୍ରାଣପଙ୍କ ବା protoplasm ଏହା ହୁଏତ ଖୁବ୍ ସମ୍ଭବ ।

ସୁଜାତା: ଓଃ, ତୁମେ ପ୍ରେମକୁ ବିଜ୍ଞାନ ସ୍ତରକୁ ଟାଣିଆଣୁଛ ?

ଗରୁଡଧ୍ୱଜ: ନା, ବିଜ୍ଞାନକୁ ପ୍ରେମ ସ୍ତରକୁ ନେଇଯାଉଛି ।

ସୁଜାତା: (ହସି) ଆଶ୍ୱସ୍ତ ହେଲି । ତୁମର ଏ ଚେଷ୍ଟା ସଫଳ ହେଲେ ବିଜ୍ଞାନ ପଢିବାକୁ ଆଉ ଡର ମାଡ଼ିବ ନାହିଁ, ପଢ଼ିବାକୁ ଭାରି ସୁଖ ଲାଗିବ ।

ଗରୁଡ଼ଧ୍ୱଜ: ପୁରାକାଳରେ ମୁନି ଋଷିମାନେ ଯୁକ୍ତ୍ୟଯୁକ୍ତ ନ ହେଲେହେଁ ବିରାଟ କଳ୍ପନା କରିବା ସାଙ୍ଗେ ସାଙ୍ଗେ କେତେ କ୍ଷୁଦ୍ର କଥାକୁ ମଧ୍ୟ ଲକ୍ଷ୍ୟ କରୁଥିଲେ ଦେଖି ମୁଁ ଆଶ୍ଚର୍ଯ୍ୟ ହୁଏ । ମନୁଷ୍ୟର ଅନ୍ତର ସହିତ ସେମାନଙ୍କର କେବଳ ପରିଚୟ ନ ଥିଲା । ମନୁଷ୍ୟର କ୍ଷୁଦ୍ର କାମନାଗୁଡ଼ିକ ସେମାନେ ସ୍ୱୀକାର କରୁଥିଲେ । ନିଜର ପ୍ରଶଂସା ନିଜେ କରିବା ବା ଶୁଣିବାକୁ ସେମାନେ ନିଷେଧ କଲେହେଁ ପ୍ରେମିକା ସମ୍ମୁଖରେ ତାହା କରିବାକୁ ଉପଦେଶ ଦେଇଅଛନ୍ତି । ତାହାର ପ୍ରୟୋଜନ ମୁଁ ବର୍ତ୍ତମାନ ହୃଦୟଙ୍ଗମ କରୁଛି । ମୁଁ ବୈଜ୍ଞାନିକ ହିସାବରେ ପୃଥିବୀର କିଛି ଖ୍ୟାତି ଅର୍ଜନ କରିଛି । ମୋର ବର୍ତ୍ତମାନ ଆୟ ମାସିକ ଟ ୮୦୦୯ । ମୋର ଲେଖା

ବନ୍ଧୁମାନଙ୍କରୁ ଆୟୁ ମଧ୍ୟ ମାସିକ ୪ ୫୦୦୯। ତୁମେ ଯେଉଁ ସୁଖ, ସ୍ୱାଚ୍ଛନ୍ଦ୍ୟ ଓ ପ୍ରାଚୁର୍ଯ୍ୟରେ ବଢ଼ିଚ ତାହା ଦେବାକୁ ମୋର ଆୟୁ ସକ୍ଷମ ହେବ। ମୋର ଶରୀର ସବଳ ଏବଂ ସୁସ୍ଥ, ବୟସ ବର୍ତ୍ତମାନ ୪୦। ମୁଁ କେବେ ହେଲେହେଁ ସାମାନ୍ୟ ରୋଗରେ ପଡ଼ିନାହିଁ। କେବଳ ଭାବନାର କେନ୍ଦ୍ର ଗୁଡ଼ିକ ଉପରେ ମଝିରେ ମଝିରେ ଚାପ ବେଶୀ ହେବାରୁ କେବେ କେବେ ମୁଣ୍ଡ ବଥାଏ ମାତ୍ର। ମୁଁ ଯେତେଦୂର ଜାଣେ ମୋର ପୂର୍ବ ପୁରୁଷମାନେ ସବଳ ଓ ସୁସ୍ଥଥିଲେ। କିନ୍ତୁ ମୋର ପିତା Podagra ରେ ପିଡ଼ିତ ହୋଇଥିଲେ।

ସୁଜାତା: (ଶଙ୍କିତଭାବରେ) ସେ କି ବ୍ୟାଧି ? କିଛି ଖରାପ ନୁହେଁ ତ ?

ଗରୁଡ଼ଧ୍ୱଜ: Gout.

ସୁଜାତା: (ଆଶ୍ୱସ୍ତ ହୋଇ) ଓ, ଏଇ ତ।

ଗରୁଡ଼ଧ୍ୱଜ: ନା, ଏହା ସାମାନ୍ୟ ନୁହଁ। ଏ ରୋଗ ବଂଶଗତ। କିନ୍ତୁ ମୋର ବିଶ୍ୱାସ ମୁଁ ତାହାର ପ୍ରଭାବ ଏଡ଼ାଇ ପାରିଚି। ତୁମର ସିଦ୍ଧାନ୍ତକୁ ସାହାଯ୍ୟ କରିବା ପାଇଁ ମୁଁ ନିଜ ବିଷୟରେ ସବୁ ପ୍ରକାଶ କଲି। ବର୍ତ୍ତମାନ ମୁଁ ପଚାରିପାରେ କି ମୋର ପ୍ରସ୍ତାବ ତୁମର ଗ୍ରହଣଯୋଗ୍ୟ ହେବ କି ନା ? (ଦୁହେଁ କିଛିକ୍ଷଣ ନୀରବ ରହିଲେ) ମୋର ଉପସ୍ଥିତି ତୁମକୁ ହୁଏତ ପ୍ରଭାବିତ କରିପାରେ। ମୁଁ ଦୂରକୁ ଯାଉଚି। ସିଦ୍ଧାନ୍ତ କରିବା ପରେ କରତାଳି ଦେଲେ ମୁଁ ଆସିବି।

ଗରୁଡ଼ଧ୍ୱଜ ଉଠି ଚାଲିଗଲେ। ସୁଜାତା ବସି ଚିନ୍ତା କରିବାକୁ ଲାଗିଲେ। କିଛିକ୍ଷଣ ଚିନ୍ତା କରିବା ପରେ ସେ ଗୋଟିଏ ଦୀର୍ଘ

ନିଶ୍ୱାସ ପକାଇ କରତାଳି ଦେଲେ । ଗରୁଡ଼ଧ୍ୱଜ ଗମ୍ଭୀର ଅଥଚ ନିର୍ଲିପ୍ତ ଭାବରେ ଆସି ଛିଡା ହେଲେ ।

ସୁଜାତା: ମୁଁ ରାଜି ।

ଗରୁଡ଼ଧ୍ୱଜ: (ସେହିପରି ଗମ୍ଭୀର ଓ ନିର୍ଲିପ୍ତ ଭାବରେ) ତେବେ କାଲି ଆମର ବିବାହ ହେବ । ଅତି ସାଧାରଣ ଭାବରେ । ମୋର କେତେଜଣ ଅନ୍ତରଙ୍ଗ ବନ୍ଧୁଙ୍କ ଛଡା କେହି ଆସିବେ ନାହିଁ । ଏଥିପାଇଁ କୌଣସି ଅନୁଷ୍ଠାନ ଓ ଧୁମ୍‌ଧାମ ମୁଁ ପସନ୍ଦ କରେ ନାହିଁ । ତୁମର ମତ କଅଣ ?

ସୁଜାତା: ମୁଁ ମଧ୍ୟ ସେସବୁ ଭଲ ପାଏ ନା । ମୋର ଅନୁରୋଧ ବିବାହ ଶେଷ ପର୍ଯ୍ୟନ୍ତ ଏ କଥା ଯେପରି ଗୋପନ ଥାଏ ।

ଗରୁଡଧ୍ୱଜ: ଏ ବିବାହ ପାଇଁ ତୁମେ ଯେପରି ପରେ ଅନୁତାପ ନ କର ସେଥିପ୍ରତି ମୁଁ ସର୍ବଦା ଦୃଷ୍ଟି ଦେବି ।

ସୁଜାତା: (ଦୀର୍ଘନିଶ୍ୱାସ ପକାଇ) ମୁଁ ମଧ୍ୟ ଭଗବାନଙ୍କୁ ପ୍ରାର୍ଥନା କରୁଛି ଯେପରି ମୁଁ ତୁମର ଅନୁତାପର କାରଣ ନ ହୁଏ ।

ଗରୁଡଧ୍ୱଜ: ଏଥିପାଇଁ କୌଣସି କାଳ୍ପନିକ ଶକ୍ତିକୁ ଡାକି ଲାଭ ନାହିଁ । ନିଜ ଉପରେହିଁ ବିଶ୍ୱାସ ରଖିବା ଦରକାର । ଟିକିଏ ଖରାରେ ବୁଲି ଆସିବା ଆସ । ତୁମର ସ୍ନାୟୁରେ ରକ୍ତର ଗତି ଚଞ୍ଚଳ ହେଉଥିବାର ଅନୁମାନ କରୁଛି । ତୁମର Medulla ଏବଂ pon ମଧ୍ୟ କୁଞ୍ଚିତ ସଙ୍କୁଚିତ । ମାନସିକ ଉତ୍ତେଜନାକୁ ଦୂର କରିବାର ଏକମାତ୍ର ଉପାୟ ତଦନୁରୂପ ଶାରୀରିକ ଉତ୍ତେଜନା ଆଣିବା । ଅତଏବ ସୂର୍ଯ୍ୟଙ୍କର ପ୍ରଖର ତେଜରେ କିଛିକ୍ଷଣ ବୁଲି ଆସିଲେ ଭଲ ହେବ ।

ସୁଜାତା: (ବିଷାଦଭାବରେ ହସି) ତୁମର ପ୍ରସ୍ତାବ ଅତି ବାସ୍ତବ, ଠିକଏ ହେଲେ ରୋମାଞ୍ଚ ନାହିଁ ସେଥିରେ ।

ଗରୁଡଧ୍ୱଜ: ଭାବପ୍ରବଣତା, ଅଳୀକ କଳ୍ପନା ଓ ଅଜ୍ଞାନତାରୁ ଜନ୍ମେ । ବିଜ୍ଞାନର ନିର୍ମଳ ଆଲୋକରେ ତାହା ଚାଲିଯାଏ ।

ସୁଜାତା: କିନ୍ତୁ ପ୍ରେମ ତ ଭାବପ୍ରବଣତା ।

ଗରୁଡଧ୍ୱଜ: ଆଦୌ ନୁହଁ । ଏ ଯୁଗରେ ପ୍ରେମ ଆଉ କବିର କଳ୍ପନା ହୋଇ ନାହିଁ, ବୈଜ୍ଞାନିକର ଗବେଷଣାର ବିଷୟ ହେଲଣି । ଦିନେ ହୁଏ ତ ବୈଜ୍ଞାନିକମାନେ ଆବିଷ୍କାର କରିବେ, ପ୍ରେମ ଏ ମହାସୃଷ୍ଟିର ଗୋଟିଏ ମୌଳିକ ଶକ୍ତି । ଯେଉଁ ଶକ୍ତିର ସଙ୍କେତରେ Hydrogen ପରମାଣୁ Chlorine ପରମାଣୁକୁ ଆକୃଷ୍ଟ କରି hydrochloricacid ସୃଷ୍ଟି କରେ, ସେହି ଶକ୍ତିର ସଙ୍କେତରେହିଁ ବୋଧହୁଏ ତୁମେ ମୋତେ ଆକୃଷ୍ଟ କରୁଚ । ଆକର୍ଷଣ ଓ ବିକର୍ଷଣ ଏ ଦୁଇଟି ସୃଷ୍ଟିର ମୌଳିକ ଶକ୍ତି । ତୁମେ ଆକର୍ଷଣ···

ସୁଜାତା: (ହସି ଦୂରକୁ ଅଙ୍ଗୁଳି ଦେଖାଇ) ଏବଂ ହେଇଟି ବିକର୍ଷଣ ଆସୁଛନ୍ତି । ସେ କିନ୍ତୁ ତୁମକୁ ଆକର୍ଷଣ କରିବାକୁ ଚାହାନ୍ତି ।

ଗରୁଡ଼ଧ୍ୱଜ: କିଏ ?

ସୁଜାତା: ବିରୂପାକ୍ଷ ବାବୁଙ୍କ ଭଗିନୀ ।

(ବିରୂପାକ୍ଷ ବାବୁଙ୍କ ଭଗିନୀ ନମିତା ଦେବୀ ପ୍ରବେଶ କଲେ । ଚାଲିଚଲଣ କଥାବାର୍ତ୍ତା ଏବଂ ବେଶଭୂଷାରେ ଉଗ୍ର ଆଧୁନିକତାର ନଗ୍ନ ଆହ୍ୱାନ)

ସୁଜାତା: ଏଇ ଯେ ନମିତା ଦେବୀ, ଆସନ୍ତୁ ।

ନମିତା: ନମସ୍କାର, ଧ୍ୱଜ ବାବୁ...

ଗରୁଡ଼ଧ୍ୱଜ: ମୋର ନାମ ଗରୁଡ଼ଧ୍ୱଜ ।

ନମିତା: (ଲଜ୍ଜିତାଭାବରେ) କ୍ଷମା କରିବେ । ଆପଣଙ୍କ ନା' ମୁଁ ଉଚ୍ଚାରଣ କରିପାରେ ନା । (ଗୁରଆଡ଼େ ଚାହିଁ) ଆଜ ପବନଟି କି ସ୍ୱର୍ଗୀୟ ।

ଗରୁଡଧ୍ୱଜ: ଆଜ ପାଗଟି ସୁନ୍ଦର ।

ନମିତା: ସମୀରଣ କି ସୁନ୍ଦର ସ୍ୱର୍ଗୀୟ ସଙ୍ଗୀତ ଗାନ କରୁଚ, ଶୁଣନ୍ତୁ ଧ୍ୱଜାରୁଡ ବାବୁ ।

ଗରୁଡ଼ଧ୍ୱଜ: ଗରୁଡ଼ଧ୍ୱଜ ବାବୁ । ପବନ ଓ ଗଛପତ୍ରର ସଂଘର୍ଷ ଜନିତ ଶବ୍ଦକୁ ସ୍ୱର୍ଗୀୟ ସଙ୍ଗୀତ କହିଲାଭ ନାହିଁ । ସ୍ୱୀକାର କରୁଚି ଏ ଶବ୍ଦ 'C' sharp ର ।

ନମିତା: ଗରୁଡଧ୍ୱଜ ବାବୁ, ଆପଣ ପ୍ରକୃତିର ସଙ୍କେତ ଓ ଭାଷା ବୁଝନ୍ତି ନାହିଁ । ଆଶ୍ଚର୍ଯ୍ୟ, ଆପଣ ଆଜି ପ୍ରାଣରେ ଗୋଟାଏ ପୁଲକ, ଗୋଟିଏ ଉନ୍ମାଦନା ଅନୁଭବ କରୁ ନାହାନ୍ତି ? (ତର୍ଜନୀ ଦେଖାଇ) ଆପଣଙ୍କ ବକ୍ଷରେ ଯେଉଁ ରକ୍ତିମା ଝୁଲୁଚି...

ଗରୁଡଧ୍ୱଜ: ଓ, ସେଟା necktie । ଆଜ ମୁଁ ଆନନ୍ଦ ଅନୁଭବ କରୁଚି ସତ, କିନ୍ତୁ ତାହା ଭିନ୍ନ କାରଣରୁ କିନ୍ତୁ କୌଣସି ଉନ୍ମାଦନା ଅନୁଭବ କରୁନାହିଁ ।

ନମିତା: ଏଇ ଘାସର ଏ ସବୁଜ ବେଦନା...

ଗରୁଡଧ୍ୱଜ: ବେଦନାର କୌଣସି ଢଙ୍ଗ ନାହିଁ । ସେ Chlorophyl.

ନମିତା: ଇସ୍, ବିଜ୍ଞାନ କି ଗଦ୍ୟମୟ, ସବୁ ଖାଲି ଠିକ ନକ୍ସ କରି କାଟି ନାଆଁ ଦେବାକୁ ଜାଣେ । ବଡ଼ କଷ୍ଟ ଖୋଜୁ ଖୋଜୁ

କ୍ଷୁଦ୍ରର ମହତ୍ତ୍ୱ ଭୁଲିଯାଏ । କିନ୍ତୁ ଏସବୁ କହି ଲାଭ ନାହିଁ, ଆପଣ ତ ନାରୀର ମାନସିକ ଶକ୍ତିକୁ ବିଶେଷ ଉଚ୍ଚସ୍ଥାନ ଦିଅନ୍ତି ନାହିଁ ।

ଗରୁଡ଼ଧ୍ୱଜ: ବୁଦ୍ଧି ନିର୍ଭର କରେ ମସ୍ତିଷ୍କର ଧଳଦିଆ ଅଂଶର ଓଜନ ଉପରେ । ନାରୀର ସେ ଅଂଶର ଓଜନ ପୁରୁଷର ସେ ଅଂଶର ଓଜନ ଠାରୁ ଦୁଇ ଆଉନ୍‌ସ ଊଣା ।

ସୁଜାତା: ଯାହା ଆମେ ଓଜନରେ ହରାଇଛୁ, ତାହା ହୁଏ ତ ଅନ୍ୟ କୌଣସି ଗୁଣରେ ପୂରଣ କରିପାରିଛୁ, ନୁହଁ କି ?

ଗରୁଡ଼ଧ୍ୱଜ: ନା, ମିସ୍ ବୋଷ । କିନ୍ତୁ ମୁଁ ଯାଏଁ, ନମସ୍କାର ନମସ୍କାର ।

ନମିତା: (ନାସିକା କୁଞ୍ଚନ କରି) ଲୋକଟାର ସୌନ୍ଦର୍ଯ୍ୟବୋଧ ନାହିଁ ।

ସୁଜାତା: (ହସି) ସେ କଥା ସତ ନୁହଁ, କାରଣ ଏଇମାତ୍ର ସେ ମୋତେ ବିବାହ କରିବାକୁ ଇଚ୍ଛା ପ୍ରକାଶ କରିଛନ୍ତି ।

ନମିତା: ସେଇଥିପାଇଁ ତ କୁହେ ତାଙ୍କର ସୌନ୍ଦର୍ଯ୍ୟ ବୋଧ ନାହିଁ ।



## ତୃତୀୟ ଦୃଶ୍ୟ :

(ଗରୁଡ଼ଧ୍ୱଜଙ୍କ ଭୋଜନ କକ୍ଷ । ଜ୍ୟୋତିର୍ମୟ ବାବୁ ଓ ସୁମିତ୍ରା ଦେବୀ ଦୁଇଟି ଚୌକିରେ ବସିଅଛନ୍ତି । ଦୁହେଁ ନୀରବ । ଗରୁଡ଼ଧ୍ୱଜ ବାବୁ ପ୍ରବେଶ କରନ୍ତେ ଜ୍ୟୋତିର୍ମୟ ଉଠି ତାଙ୍କର ପାଦ ଛୁଇଁ ନମସ୍କାର କଲେ । ସୁମିତ୍ରା ଦେବୀ ଉଠି ଘର ଭିତରକୁ ଚାଲିଗଲେ)

ଗରୁଡ଼ଧ୍ୱଜ: ମୁଁ ଆଶା କରେ ସୁମିତ୍ରା ରାଜି ହୋଇଛି । ମୁଁ ନିଜର ମତ ଅନ୍ୟ ଉପରେ ଚାପି ଦେବାକୁ ଘୃଣା କରେ କିନ୍ତୁ ତୁମ ସହିତ ସମ୍ବନ୍ଧ ସ୍ଥାପିତ ହେଲେ ମୁଁ ଅତିଶୟ ଆନନ୍ଦିତ ହେବି । ତୁମର Missing Link ବିଷୟରେ ପ୍ରବନ୍ଧ ଭୁଲିବାର ନୁହଁ ।

ଜ୍ୟୋତି: ଆପଣଙ୍କର ମୋ ପ୍ରତି ଚିରନ୍ତନ ବିଶେଷ ଅନୁଗ୍ରହ । ମୁଁ ପ୍ରସ୍ତାବ କରିଛି । ସୁମିତ୍ରା ଦେବୀ ନା କହି ନାହାନ୍ତି ।

ଗରୁଡ଼ଧ୍ୱଜ: ତା'ହେଲେ ହଁ କହିଛି ।

ଜ୍ୟୋତି: ନା, ତା ମଧ୍ୟ ନୁହଁ, ମୁଁ ବିଲାତରୁ ଫେରିଲେ ଏ ବିଷୟରେ ବିବେଚନା କରିବେ ବୋଲି ସେ କହିଛନ୍ତି । ମୁଁ ଦ୍ୱିତୀୟ ଥର ପାଇଁ ବିଲାତ ଯାଉଛି, ଆପଣ ତ ଜାଣନ୍ତି ।

ଗରୁଡ଼ଧ୍ୱଜ: ହଁ, ତୁମର Missing Link ବିଷୟରେ ଗବେଷଣା ପୂର୍ଣ୍ଣ କରିବାପାଇଁ ।

ଜ୍ୟୋତି: କିନ୍ତୁ ସୁମିତ୍ରା ଦେବୀ ବୋଧହୁଏ ମୋର ନାସ୍ତିକତା ପସନ୍ଦ କରନ୍ତି ନାହିଁ, ସେଥିପାଇଁ......

ଗରୁଡ଼ଧ୍ୱଜ: ସେଥିରେ କିଛି ଆସେ ଯାଏ ନାହିଁ । ଯେ ଯାହାର ମତ ପୋଷଣ କରିବାର ସମ୍ପୂର୍ଣ୍ଣ ସ୍ୱାଧୀନତା ଥିବା ଉଚିତ ।

ଜ୍ୟୋତି: କିନ୍ତୁ ମୁଁ ନାସ୍ତିକ ହେଲେ ମଧ୍ୟ ମନ୍ଦିରର ଶଙ୍ଖ ଘଣ୍ଟାଧ୍ୱନି ଓ ଧୂପ ପୁଷ୍ପର ସୁଗନ୍ଧରେ ଓ ମୃଦଙ୍ଗର ମୂର୍ଚ୍ଛନାରେ ମୁଁ ବେଳେ ବେଳେ ଅଭିଭୂତ ହୋଇଯାଏ । Laboratory ରେ ଏପରି ଅନୁଭୂତି ମୁଁ କେବେହେଁ ପାଇ ନାହିଁ ।

ଗରୁଡ଼ଧ୍ୱଜ: ସେଥିରୁ ସତ୍ୟର ସନ୍ଧାନ ମିଳେ ନାହିଁ । ଯୁଗ ଯୁଗର ସଂସ୍କାର ବଶତଃ ତୁମର ଘ୍ରାଣେନ୍ଦ୍ରିୟ ଓ ଶ୍ରବଣେନ୍ଦ୍ରିୟ ତୁମ ମସ୍ତିଷ୍କରେ ବହ୍ୱଳତା ସୃଷ୍ଟି କରେ ।

ଜ୍ୟୋତି: ଖୁବ୍ ସମ୍ଭବ ତାହାହିଁ । ଆପଣଙ୍କୁ ଓ ସୁମିତ୍ରା ଦେବୀଙ୍କୁ ମୋ ବିଷୟରେ ସବୁ କଥା ଜଣାଇବା ଉଚିତ । ମୋର ସ୍ୱାସ୍ଥ୍ୟ, ଆୟ ଆଦି ବିଷୟରେ ତ ଆପଣଙ୍କୁ ସବୁ ଜଣା । ମୋ ଜୀବନର କୌଣସି କଥା ଆପଣଙ୍କୁ ଅଜଣା ନାହିଁ । କେବଳ ଗୋଟିଏ କଥା ମୁଁ ଏ ପର୍ଯ୍ୟନ୍ତ ପ୍ରକାଶ କରି ନାହିଁ । (ଟିକଏ ନୀରବ ରହି) ମୁଁ ଜଣକୁ ଭଲ ପାଉଥିଲି, ପାଉଥିଲି କାହିଁକି, ଏ ପର୍ଯ୍ୟନ୍ତ ପାଏ ।

ଗରୁଡ଼ଧ୍ୱଜ: ଏ ତ ସତେ ଗୋଟିଏ ନୂଆ କଥା ।

ଜ୍ୟୋତି: ଏଠାରୁ ବି. ଏସ୍‌ସି. ପାଶ୍ କରିବା ପରେ ମୁଁ କଲିକତାରେ ଏମ୍. ଏସ୍. ସି. ପଢୁଥିଲି । ସେତେବେଳେ ତାଙ୍କ ସହିତ ମୋର ପରିଚୟ ହୁଏ । ପରିଚୟ କ୍ରମେ ଘନିଷ୍ଠ ହୁଏ । ମୁଁ ଯେତେବେଳେ ପ୍ରଥମ ଥର ପାଇଁ ବିଲାତ ଗଲି, ସେତେ-ବେଳେ ସ୍ଥିର ହୋଇଥିଲା ବିଲାତରୁ ଫେରି ତାଙ୍କୁ ମୁଁ ବିବାହ କରିବି । କିନ୍ତୁ ବିଲାତରୁ ଫେରି ଶୁଣିଲି ଯେ ସେ ଓ ତାଙ୍କ ବଂଶର କେହି ହେଲେ ସାମ୍ପ୍ରଦାୟିକ ହତ୍ୟାକାଣ୍ଡ ପରେ ଆଉ ଜୀବିତ ନାହାନ୍ତି । ସେମାନେ ସେତେବେଳେ ଥିଲେ ଢାକାରେ । କିନ୍ତୁ ତାଙ୍କୁ ମୁଁ ଏପର୍ଯ୍ୟନ୍ତ ଭୁଲି ପାରିନାହିଁ ।

ଗରୁଡ଼ଧ୍ୱଜ: ଅତି ଶୋଚନୀୟ କଥା । ଗୋଟାଏ କୃଷ୍ଟିକୁ ଜୋରକରି ଦୁଇଭାଗ କରିଦେଲେ ଦୁଇଭାଗ ମଧ୍ୟରେ ପ୍ରେମ କ୍ରମେ

ବିଦ୍ୱେଷ ଓ ଈର୍ଷା ରୂପେ ପ୍ରକାଶ ପାଏ । କିନ୍ତୁ ତା ସହିତ ସୁମିତ୍ରାର କି ସମ୍ବନ୍ଧ ଅଛି ?

ଜ୍ୟୋତି: କିଛି ନାହିଁ । କେବଳ ଏ କଥା ପ୍ରକାଶ ନ କରିବା ପାଇଁ ମୋର ବିବେକ ମୋତେ ଶାନ୍ତି ଦେଉ ନ ଥିଲା । ହୁଏତ ବିବାହ ପରେ ସୁମିତ୍ରା ଦେଖି ଶୁଣି ଅନ୍ୟ କିଛି ମନେ କରି ପାରନ୍ତି...

ଗରୁଡ଼ଧ୍ୱଜ: ସେ କଥା ଠିକ୍ । ତୁମେ ଏହା ପ୍ରକାଶ କରି ମହାନ୍ ହୃଦୟର ପରିଚୟ ଦେଇଛ । (କିଛିକ୍ଷଣ ନୀରବ ରହି) ବିଲାତରୁ ଆସି ତୁମେ ତୁମର ଗୁରୁପତ୍ନୀଙ୍କୁ ଦେଖିବାକୁ ପାଇବ (ଜ୍ୟୋତିର୍ମୟ କିଛି ବୁଝି ନ ପାରିବା ଭଳି ଚାହିଁ ରହିଲେ) ମୁଁ କାଲି ବିବାହ କରିବି ।

ଜ୍ୟୋତି: (ଅତିଶୟ ଆନନ୍ଦିତ ହୋଇ ପୁଣି ପ୍ରଣାମ କଲେ) ସାର ମୋର କି ଆନନ୍ଦ । ମୋର ମା କିଏ ହେବେ ଜାଣି ପାରେ କି ?

ଗରୁଡ଼ଧ୍ୱଜ: କାଲି ତୁମେ ସ୍ୱଚକ୍ଷୁରେ ଦେଖିବ । ମୋର ଅନୁରୋଧ ତୁମେ କାଲି ଦିନଟା ରହିଯାଅ ।

ଜ୍ୟୋତି: ନିଶ୍ଚୟ ସାର୍ ।



## ଦ୍ୱିତୀୟ ଅଙ୍କ । ପ୍ରଥମ ଦୃଶ୍ୟ:

(ପର ଦିନ ସକାଳ ୮ଟା । ଗରୁଡ଼ଧ୍ୱଜ ନିଜ ଲେବ-ରେଟେରିରେ ନିବିଷ୍ଟ ମନରେ ଗବେଷଣା କରୁଛନ୍ତି । ଜ୍ୟୋତିର୍ମୟ ପ୍ରବେଶ କଲେ)

ଜ୍ୟୋତି: (ଆନନ୍ଦିତ ଓ ବ୍ୟସ୍ତ ଭାବରେ) ସାର୍ ବିବାହର କୌଣସି ଆୟୋଜନ ତ ଦେଖୁ ନାହିଁ ।

ଗରୁଡଧ୍ୱଜ: (ହସି) ସକାଳ ଆଠୁଠାରୁ !! ଆଜ ଏଥିପାଇଁ ପ୍ରସ୍ତୁତ ହେବାର କଥା ନାହିଁ ଜ୍ୟୋତି । ମୁଁ ଧୂମ୍ ଧାମ୍ ଭଲ ପାଏ ନାହିଁ, ମୁଁ ତ ପ୍ରଦର୍ଶନୀ ଖୋଲୁ ନାହିଁ । ସେ ମଧ୍ୟ ଏ ସବୁ ଭଲ ପାଆନ୍ତି ନାହିଁ । ରାତି ଦଶଟା ପରେ ମୋର ନିୟମିତ ଲେବରେଟେରିର କାମ ସରିଲେ ତୁମେ, ମୁଁ ଓ କେତେକ ଅନ୍ତରଙ୍ଗ ବନ୍ଧୁ ଯିବୁ ଓ ଅଳ୍ପ ସମୟ ମଧ୍ୟରେ ତାଙ୍କୁ ଏଠାକୁ ନେଇ ଆସିବୁ ।

ଜ୍ୟୋତି: ସାର୍, ମୋର ଗୋଟାଏ ଅନୁରୋଧ । ମୁଁ ମଧ୍ୟ ଆଜି ବିବାହ କରିବାକୁ ଚାହେଁ । (ଲଜ୍ଜିତ ଭାବରେ) ଏ ବିଷୟ ସାହସ କରି ମୁଁ ସୁମିତ୍ରା ଦେବୀଙ୍କୁ ପଚାରି ପାରୁନାହିଁ । ଆପଣ···ଯଦି···

ଗରୁଡଧ୍ୱଜ: ସୁମି ଯଦି ରାଜି ହୁଏ ତ ଅତି ଉତ୍ତମ ହେବ । ସୁମି··· ସୁମି···

ସୁମିତ୍ରା: (ପ୍ରବେଶ କରି) ଭାଇ, ମିସ୍ ବୋଷ୍ ଆସିଅଛନ୍ତି । ସେ ତୁମ ସହିତ ଦେଖା କରିବାକୁ ଚାହାନ୍ତି ।

ଗରୁଡଧ୍ୱଜ: ବେଶ୍ ତ ତାଙ୍କୁ ଏଇଠାକୁ ଡାକି ଦିଅନା, ମୋର ପ୍ରିୟ ଛାତ୍ର ସହିତ ପରିଚୟ କରାଇ ଦିଏ । ଆଜ ଗୋଟାଏ କଥା, ଜ୍ୟୋତି ମଧ୍ୟ ଆଜି ବିବାହ କରିବାକୁ ଚାହେଁ । ତୁମର ଆପତ୍ତି ଅଛି ?

ସୁମିତ୍ରା: ସେ କଥା ପରେ । ତୁମେ ଆଗେ ଶୁଣ ମିସ୍ ବୋଷ୍ କଅଣ କହିବାକୁ ଚାହାନ୍ତି । ମୁଁ ତାଙ୍କୁ ଡାକି ଆଣେ ।

(ସୁମିତ୍ରା ଚାଲିଗଲେ ଏବଂ ଅଳ୍ପ ସମୟ ପରେ ସୁଜାତାଙ୍କ ସହ ପ୍ରବେଶ କଲେ ।)

ଜ୍ୟୋତି: (ଚମକି ପଡି) ସୁଜାତା !!!

ସୁଜାତା: (ଖୁସି ଓ ଆଶ୍ଚର୍ଯ୍ୟାନ୍ୱିତା ଭାବରେ) ତୁମେ !!!

(ସୁଜାତା କିଛି କ୍ଷଣ ସେହିପରି ଜ୍ୟୋତିର୍ମୟଙ୍କୁ ଚାହିଁ ରହିଲେ । ତାପରେ ସେ ଫେରି ଯାଉଥିଲେ କିନ୍ତୁ ନିଜକୁ ସମ୍ଭାଳି ନ ପାରି ଟଳି ଟଳି ପଡ଼ି ଯାଉଥିଲେ । ଗରୁଡ଼ଧ୍ୱଜ ଦୌଡ଼ି ଯାଇ ତାଙ୍କୁ ଧରି ଚୌକି ଉପରେ ଶୁଆଇ ଦେଲେ)

ଗରୁଡ଼ଧ୍ୱଜ: ତା ହେଲେ ଜ୍ୟୋତି, ତୁମେ ମୋର ଭାବୀ ପତ୍ନୀଙ୍କୁ ଜାଣ ।

ଜ୍ୟୋତି: ସାର୍, ସେ ତ ମୋର ଭାବୀ ପତ୍ନୀ । ଏଙ୍କର କଥା ମୁଁ କାଲି କହୁଥିଲି ।

(ଗରୁଡ଼ଧ୍ୱଜ କିଛିକ୍ଷଣ ଜ୍ୟୋତିର୍ମୟଙ୍କୁ ଚାହିଁ ଗୋଟିଏ ଦୀର୍ଘ ନିଶ୍ୱାସ ପକାଇଲେ)

ଜ୍ୟୋତି: ସୁଜାତା, ସୁଜାତା ।

ସୁଜାତା: (ଚୌକିରୁ ଉଠି ବସି) ଜ୍ୟୋତି, ଜ୍ୟୋତି ।

ଜ୍ୟୋତି: ତୁମେ ବଞ୍ଚିଛ ଅଥଚ ମୋତେ କିଛି ଜଣାଇନା, ଆଶ୍ଚର୍ଯ୍ୟ ।

ସୁଜାତା: ମୋ ଉପରେ ଯେଉଁ ପାଶବିକ ଅତ୍ୟାଚାର ହୋଇଥିଲା ତାହା ପରେ ମୁଁ ଆଉ ବିବାହ କରିବାକୁ ଇଚ୍ଛା କରି ନ ଥିଲି । ବାପାଙ୍କର ବନ୍ଧୁ ବିରୁପାକ୍ଷ ବାବୁ ନ ଥିଲେ ମୋର ପ୍ରାଣ ନ ଥାନ୍ତା । ତେଣୁ ମୁଁ ତୁମ୍ଭର ଆଉ କୌଣସି ଖବର ରଖିବାକୁ ଚେଷ୍ଟା କରିନାହିଁ । (ସୁଜାତା ପୁଣି ମୂର୍ଚ୍ଛିତା ପ୍ରାୟ ଚୌକିରେ ଢ଼ଳି ପଡିଲେ)

ଗରୁଡ଼ଧ୍ୱଜ: (ଶାନ୍ତ ଭାବରେ) ମିସ୍ ବୋଷ୍, ମାନସିକ ସଙ୍ଘାତ ହେତୁ ତୁମର ମସ୍ତିଷ୍କର ରକ୍ତ ପ୍ରବାହ କିଞ୍ଚିତ ଦୁର୍ବଳ ହୋଇପଡ଼ିଛି । ମୁଣ୍ଡ ତଳକୁ କରି ଶୋଇ ପଡ଼, ମସ୍ତିଷ୍କର ରକ୍ତ ପ୍ରବାହ ପୁଣି ପୂର୍ବ ପରି ଫେରି ଆସିବ । (ନିଜ ହାତ ଘଡ଼ିକୁ ଗୁହିଁ) ଜ୍ୟୋତି, ମୋର କ୍ଲାସର ବେଳ ହୋଇ ଗଲାଣି, ମୁଁ ଯାଏଁ ପ୍ରସ୍ତୁତ ହେବାକୁ । ତୁମେ ମିସ୍ ବୋଷ୍‌ଙ୍କ ଯତ୍ନ ନେବ ।

(ଗରୁଡ଼ଧ୍ୱଜ ବାବୁ ତାଙ୍କର ସ୍ୱାଭାବିକ ଧୀର ଶାନ୍ତ ପଦକ୍ଷେପରେ ଘରୁ ଚାଲିଗଲେ ।)

ଜ୍ୟୋତି: ସୁଜାତା, ସୁଜାତା । ଆଜି ମୁଁ ତୁମକୁ ଫେରି ପାଇଛି, ଆଜି ମୋର କି ଆନନ୍ଦ ।

ସୁଜାତା: (ଚୌକିରୁ ଉଠି) ମୁଁ ତୁମକୁ କେବେହେଁ ଭୁଲି ପାରିନି । ମୋର ବିବାହ ଆଜି ହେବ । (ହସି) କେବଳ ପାତ୍ର ବଦଳି ଯିବ ।

ଜ୍ୟୋତି: (ବ୍ୟଥିତଭାବରେ) କିନ୍ତୁ ସାର୍...ସାର୍...

ସୁଜାତା: ସେଥିପାଇଁ ଚିନ୍ତା କରନା ତୁମେ । ସେ କିଛି ମନେ କରିବେ ନାହିଁ । ତାଙ୍କର ହୃଦୟ ବୋଲି କିଛି ଜଞ୍ଜାଳ ନାହିଁ ।

ଜ୍ୟୋତି: ମୁଁ ସାର୍‌ଙ୍କୁ ସବୁ ବୁଝାଇ କହିବି...

ଗରୁଡ଼ଧ୍ୱଜ: (କଲେଜ ପୋଷାକ ପିନ୍ଧି ପ୍ରବେଶ କରି, ଅଳ୍ପ ହସି) ଦରକାର ନାହିଁ ଜ୍ୟୋତି । ମୁଁ ଆସୁ ଆସୁ ସବୁ ଶୁଣିଛି । ତୁମର ଦୁହିଁଙ୍କର ସିଦ୍ଧାନ୍ତକୁ ଅପେକ୍ଷା କରୁଥିଲି ମାତ୍ର । ତୁମ୍ଭମାନଙ୍କର ସିଦ୍ଧାନ୍ତ ସୁନିଶ୍ଚିତ । ଆଶୀର୍ବାଦ କରେଁ

ମିସ୍ ବୋଷ, ତୁମେ ସୁଖୀ ହୁଅ । ଜ୍ୟୋତି ତୁମକୁ ମଧ୍ୟ ଆଶୀର୍ବାଦ କରେଁ ତୁମେ ଜୀବନରେ ସୁଖୀ ହୁଅ ଏବଂ ତୁମର ଗବେଷଣା ସଫଳ ହେଉ । Missing Link ଠ ପାଇଗଲିଣି···ହେଁ···ହେଁ···

ଜ୍ୟୋତି: (କଅଣ କରିବେ ବା କହିବେ ବୁଝି ନ ପାରି) ସାର୍··· ସାର୍···

ଗରୁଡ଼ଧ୍ୱଜ: ମୋ ବିଷୟରେ ଚିନ୍ତା କରନା ।

ସୁଜାତା: ମୁଁ ଆପଣଙ୍କୁ କଅଣ କହିବ ? ଏପରି ଘଟିବ ବୋଲି ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି । ଆପଣଙ୍କୁ ଯେଉଁ ଆଘାତ, ଯେଉଁ ଲଜ୍ଜା ମୁଁ ଦେଲି···ମୋତେ କ୍ଷମା କରିବେ··· ମୋତେ ଘୃଣା କରିବେ ନାହିଁ···ଓଃ, କି କୁକ୍ଷଣରେ ମୋର ଜନ୍ମ ।

ଗରୁଡ଼ଧ୍ୱଜ: ଏଥିରେ ଲଜ୍ଜାର କିଛି ନାହିଁ ବରଞ୍ଚ ଗୌରବ ଅଛି । ତୁମକୁ ଘୃଣା କରିବି ମୁଁ କାହିଁକି, ତୁମର ଦୋଷ କଅଣ ଯେ କ୍ଷମା କରିବି । ତୁମର ଜନ୍ମକୁ ଦୋଷ ଦେଉଛ କାହିଁକି ? ଯାହାକୁ ତୁମେ ବିବାହ କରିବାକୁ ଯାଉଚ, ସେ ଏ ଯୁଗର ଶ୍ରେଷ୍ଠ ବୈଜ୍ଞାନିକ ହେବ । ତାର ଉଦ୍ଦେଶ୍ୟ ସାଧନରେ ସାହାଯ୍ୟ କରିବାର ସୁଯୋଗ ପାଇ ତୁମେ ନିଜକୁ ଭାଗ୍ୟବତୀ ମନେ କରିବା ଉଚିତ । ଆଉ, ଏ ଘଟଣା ପାଇଁ ତୁମେ ତ ଦାୟୀ ନୁହଁ । ମନୁଷ୍ୟ କାର୍ଯ୍ୟ ଓ କାରଣ ଦୁଇଟି ଜାଣିପାରିଲେ ମଧ୍ୟ ସେ ଦୁହିଁଙ୍କୁ ନିୟନ୍ତ୍ରଣ କରିବାର କ୍ଷମତା ହାସଲ କରିପାରି ନାହିଁ । ଅତଏବ ଭାରତ ଭାଗ ଭାଗ ପରେ ତୁମ ଜୀବନରେ ଯେଉଁ ବ୍ୟତିକ୍ରମ ଘଟିଲା ତାହାପାଇଁ ତୁମେ ଦାୟୀ ନୁହଁ ।

(ଜ୍ୟୋତିର୍ମୟୀ ଓ ସୁଜାତା ଦୁହେଁ ଗରୁଡ଼ଧ୍ୱଜଙ୍କ ଗୋଡ଼ ଛୁଇଁ ପ୍ରଣାମ କଲେ । ଗରୁଡ଼ଧ୍ୱଜ ସେମାନଙ୍କ ମୁଣ୍ଡରେ ହାତ ରଖି ଆଶୀର୍ବାଦ କଲେ)

ଗରୁଡ଼ଧ୍ୱଜ: ଯାଅ, ମୋର ଗାଡ଼ି ପ୍ରସ୍ତୁତ । ଆଜି ଦିନକ ପାଇଁ ସେ ଗାଡ଼ି ତୁମର ବୋଲି ମନେ କରିବ ।

ଜ୍ୟୋତି: ସାର୍, ଏ ମୋର ଲଜ୍ଜା···

ଗରୁଡ଼ଧ୍ୱଜ: ଛି, ଛି, ଏଥିରେ ଲଜ୍ଜାର ସ୍ଥାନ କାହିଁ ? ବରଂ ଆମ ତିନିଜଣଙ୍କ ଭିତରେ ତୁମେ ହିଁ ସବୁଠୁ ବେଶୀ ନିର୍ଦ୍ଦୋଷ ।

ଜ୍ୟୋତି: ସୁମିତ୍ରା ଦେବୀ······

ଗରୁଡ଼ଧ୍ୱଜ: ଓ, ସେ । ମୁଁ ତାଙ୍କୁ ସବୁ ବୁଝାଇ କହିବି । ବର୍ତ୍ତମାନ ସେ ଧୈର୍ଯ୍ୟ ହରାଇଛି, ଆସ୍ତେ ଆସ୍ତେ ସବୁ ଭୁଲିଯିବ । କ୍ଷତଆଡ଼େ ଯେତେ ମନ ଦେବ ତାର ବେଦନା ସେତେ ବଢ଼ିବାକୁ ଲାଗିବ । ଜ୍ୟୋତି ବିଲାତ ଯାଇ ତୁମର ଗବେଷଣା ବିଷୟରେ ମୋତେ ଜଣାଉଥିବ । ଆଜି ଯଦି ତୁମମାନଙ୍କର ବିବାହ ହୁଏ ତେବେ କଲେଜରେ ମୋତେ ସମ୍ବାଦ ଦେବ ।

(ଗରୁଡ଼ଧ୍ୱଜ ଆଖିରୁ ଚଷମା ଓହ୍ଲାଇ ଚଷମା ପୋଛୁ ପୋଛୁ ଚାଲିଗଲେ । ସୁଜାତା ଓ ଜ୍ୟୋତିର୍ମୟୀ ତାଙ୍କୁ ଆଶ୍ଚର୍ଯ୍ୟଭାବରେ ଚାହିଁ ରହିଲେ)



## ଦ୍ୱିତୀୟ ଦୃଶ୍ୟ :

(ତିନବର୍ଷ ପରେ । ଗରୁଡ଼ଧ୍ୱଜ ତାଙ୍କର ଲେବୋରେଟୋରୀରେ କାମ କରୁଛନ୍ତି । ଆଜକାଲି ସେ ପ୍ରାୟ ତାଙ୍କର ଲେବୋରେଟୋରୀରେ ଥାଆନ୍ତି । ଗୃହଆଡ ନିସ୍ତବ୍ଧ । କେବଳ Bunsen burner ଜଳିବାର ଶବ୍ଦ ଓ କାନ୍ଥ ଘଡ଼ିର ଟକ୍ ଟକ୍ ଶବ୍ଦ ଶୁଭୁଚି । ଗରୁଡ଼ଧ୍ୱଜ ଆଲୁଅ ସାମନାକୁ ଆସି test tube ଟେକି ଦେଖିବାକୁ ଲାଗିଲେ । ତାଙ୍କର ଶରୀର ଅତ୍ୟନ୍ତ ଶୀର୍ଣ୍ଣ ଏବଂ ଆଖି ପାଖରୁ ଠିକଏ ବାଙ୍କି ଯାଇଚି । ଆଲୁଅରେ କିଛିକ୍ଷଣ test tube ଦେଖିବା ପରେ ତାଙ୍କ ମୁହଁରେ ସନ୍ତୋଷ ପ୍ରକାଶ ପାଇଲା । ସେ ଖାତାରେ କଅଣ ନୋଟ କଲେ ।

ଘଡ଼ିରେ ଢ଼ଂ ଢ଼ଂ ବାରଟା ବାଜିଲା । ଗରୁଡ଼ଧ୍ୱଜ ନଇଁ ନଇଁ ଯାଇ କାଲେଣ୍ଡାରର ଶେଷପୃଷ୍ଠ ଚିରିଦେଲେ ଏବଂ ଆସି ଆରାମ ଚୌକି ଉପରେ ବିଶ୍ରାମ ନେଲେ)

ଗରୁଡ଼ଧ୍ୱଜ: ତିନବର୍ଷ ଗୁଲିଗଲା । ସୁ···ଓଃ (ଗରୁଡ଼ଧ୍ୱଜ ମୁଣ୍ଡରେ ହାତଦେଇ ଚିତ୍କାର କରି ଉଠିଲେ । ସୁମିତ୍ରା ଦୌଡ଼ି ଆସି ଦେଖିଲେ ଗରୁଡ଼ଧ୍ୱଜ ଅଜ୍ଞାନ । ସେ "ଭାଇ" "ଭାଇ" ଦୁଇ ତିନଥର ଡାକି ହଲାଇ ଉଠାଇବାକୁ ଚେଷ୍ଟା କଲେ । ଗରୁଡ଼ଧ୍ୱଜ ଉଠିଲେ ନାହିଁ । ସୁମିତ୍ରା କାନ୍ଦି ପକାଇଲେ ଏବଂ ବ୍ୟସ୍ତଭାବରେ ଏ ପାଖ ସେ ପାଖ ଅନେକଥର ଦୌଡ଼ି ଫୋନ୍ ପାଖକୁ ଯାଇ ବିରୁପାକ୍ଷ ଓ ଜଣେ ଡାକ୍ତରଙ୍କୁ ଡାକିଲେ । ତା ପରେ ସେ ପାଣି ଆଣି ଗରୁଡ଼ଧ୍ୱଜଙ୍କ ମୁହଁରେ ଛାଟିବାକୁ ଲାଗିଲେ smelling salt ଶିଶି ଆଣି ଶୁଙ୍ଘାଇଲେ । ଅଳ୍ପ ସମୟ ମଧ୍ୟରେ ବିରୁପାକ୍ଷ ଓ ଡାକ୍ତର ଆସିଲେ । ଡ଼ାକ୍ତର ଆସି ପରୀକ୍ଷା କରିବାକୁ ଲାଗିଲେ ।)

ବିରୁପାକ୍ଷ: କଅଣ ହେଲା ?

ସୁମିତ୍ରା: (ଅଧୀରଭାବରେ) ମୁଁ କିଛି ଜାଣି ନାହିଁ, ମୁଁ ଆସି ଦେଖିଲି ଏମିତି ଚୌକି ଉପରେ ଭାରି ଅଜ୍ଞାନ ।

ବିରୁପାକ୍ଷ: ସେଇଥିପାଇଁ ତାର କଅଣ ଯେ ହେଲା, ଯେତେ ମନା କଲେ ସୁଦ୍ଧା ସବୁବେଳେ ଖାଲି ଗବେଷଣା ଓ ପଢ଼ା । ଅଥଚ ଇଆଡେ ଦିନକୁ ଦିନ ଶୁଖିଯିବାକୁ ଲାଗିଲା । ଅଥଚ କିଛି ରୋଗ ନାହିଁ ।

ସୁମିତ୍ରା: ମୁଁ ଯେତେ କହିଲି ଛୁଟି ନେଇ ବିଶ୍ରାମ ନେବାକୁ କିଛି ଶୁଣିଲେ ନାହିଁ । ଏଇ ଲେବୋରେଟୋରୀରେ ସଦାବେଳେ ରହିଲେ ।

ଗରୁଡ଼ଧ୍ୱଜ: ଓଃ···ଉଁଃ···

ବିରୁପାକ୍ଷ: କେମିତି ଲାଗୁଚି ?

ଗରୁଡ଼ଧ୍ୱଜ: (ହସି) ବେଶ ଭଲ । ତୁ ଆସିଚୁ । ଏ କିଛି ନୁହେଁ ଭାଇ, ଶରୀରର ସମବାୟ ସମିତି କ୍ରମେ କ୍ରମେ ଭାଙ୍ଗି ପଡୁଚି । ମୁଁ ଜ୍ଞାନ ହରାଇ ନାହିଁ । ମୋର ପ୍ରତ୍ୟେକ ପ୍ରାଣକୋଷ କପୂର ଗୋଟି ଗୋଟି ହୋଇ ମୁକ୍ତିଲାଭ କରୁଚି, ଲକ୍ଷ୍ୟ କରୁଚି । ଦେଖି ବଡ ଆଶ୍ଚର୍ଯ୍ୟ ଲାଗୁଚି ସତେ । କି ସୁନ୍ଦର ଏ ଶରୀରର ସୃଷ୍ଟି, ଦେଖି ମୁଗ୍ଧ ନ ହୋଇ ରହିପାରୁନି । ଓଃ, ଓଃ···(ଗରୁଡ଼ଧ୍ୱଜ ବିଛଣାରୁ ଉଠି ସମସ୍ତଙ୍କୁ ଚାହିଁଲେ) ନମସ୍କାର, ନମସ୍କାର । ମୁଁ ତେବେ ଆସେ । (ସେ ବିଛଣାରେ ଗଡ଼ି ପଡ଼ିଲେ । ତାଙ୍କର ଅଦ୍ଭୁତ ସମବାୟ ସମିତି ଏକଦମ୍ ଭାଙ୍ଗି ପଡ଼ିଲା । ସୁମିତ୍ରା ଦେବୀ

କାନ୍ଦ କାନ୍ଦ ତାଙ୍କ ଉପରେ ଲୋଟିଗଲେ । ବିରୁପାକ୍ଷ କାନ୍ଦ ଉଠିଲେ)

ଡାକ୍ତର: କଅଣ ରୋଗ ବୁଝିପାରିଲି ନାହିଁ କିଛି ।

ବିରୁପାକ୍ଷ: (ଲୁହ ପୋଛି) ସେ ଯଦି ଭାବପ୍ରବଣ ହୋଇଥାଆନ୍ତା, ତେବେ କୁହନ୍ତି ସେଥିରୁ ଦିନୁ ମାନସିକ ଆଘାତ ଫଳରେ ତାର ଜୀବନୀଶକ୍ତି ଦିନକୁ ଦିନ ଦୁର୍ବଳ ହୋଇ ଶେଷରେ···

ଡାକ୍ତର: କିନ୍ତୁ ଗରୁଡଧ୍ୱଜ ବାବୁ ତ ମୋଟେ ଭାବପ୍ରବଣ ନୁହନ୍ତି ।

ବିରୁପାକ୍ଷ: ତେବେ ରୋଗ କଅଣ ?

ଡାକ୍ତର: Cardiac ଜିଷ୍ଟିପ୍ସି ।

ବିରୁପାକ୍ଷ: ଜିଷ୍ଟିପ୍ସି କାର୍ଡିଆକ୍ ।

ଯବନିକା



# ସ୍ମୃତିରତ୍ନାକର

ମାଘ ମାସ ଶୀତଦିନ ସକାଳ । ଆଜି ରବିବାର । ଛଅଟି ଦିନ ଅଫିସ୍‌ରେ ହାଡ଼ଭଙ୍ଗା ଖଟଣି ପରେ ଆଜି ଟିକିଏ ବିଶ୍ରାମ । ଉତ୍ତରୀ ପବନ ଆଜି ସକାଳୁ ଯେପରି ହିମାଳୟରୁ ବରଫ ପରିବେଷଣ କରୁଛି ।

ବାମନ ବାବୁଙ୍କ ବୈଠକଖାନା ଘର କିନ୍ତୁ ସେ ପବନକୁ ହାରି ମନାଇଛି । ବାମନ ବାବୁ ନିତ୍ୟକର୍ମ ସାରି ଅଳସଭାବରେ ଗଦି ଚୌକିରେ ବସି କଫି ପାନ କରିବାକୁ ଲାଗିଲେ । ପିଆଲାରୁ ଚୁମୁକେ କଫି ପିଇ ସେ ଦାମିକା ଚୁରୁଟରେ ଅଗ୍ନି ସଂଯୋଗ କଲେ ଏବଂ ଚୁରୁଟରେ ଗୋଟିଏ ଟାଣ ମାରି ମୁହଁ ଗୋଜିଆ କରି କେତେ-ଗୁଡ଼ିଏ ଧୂଆଁର କୁଣ୍ଡଳୀ ଉପରକୁ ଛାଡ଼ିଦେଇ ସେମାନଙ୍କୁ ଚାହିଁ ରହିଲେ । ଘରର ଦ୍ୱାର କବାଟ ସବୁ ବନ୍ଦ ଥିଲେହେଁ ବିଜୁଳି ଆଲୁଅରେ କୁଣ୍ଡଳୀଗୁଡ଼ିକର ଗତି ସ୍ପଷ୍ଟ ଦିଶୁଛି । କୁଣ୍ଡଳୀଗୁଡ଼ିକ ତାଙ୍କ ପାଟିରୁ ଗୋଟିଏ ସ୍ରୋତରେ ବାହାରିଗଲେ ଏବଂ ହଠାତ୍ କିଛି ଉପରକୁ ଉଠି ମନ ଆନନ୍ଦରେ ଯେପରି ପିଲାଙ୍କ ଭଳି ଖେଳିବାକୁ ଲାଗିଲେ । କେତେବେଳେ ଓଲଟି, କେତେବେଳେ ଉପରକୁ ଉଠି କେତେବେଳେ ବା ଖସି କୁଣ୍ଡଳୀଗୁଡ଼ିକ ଯେପରି ନବଜନ୍ମ

ଉପଭୋଗ କରିବାକୁ ଲାଗିଲେ । ହଠାତ୍ କୁଣ୍ଡଳୀଜଗତରେ ଗୋଟାଏ ବିଶୃଙ୍ଖଳା ସୃଷ୍ଟି ହେଲା । କୁଣ୍ଡଳୀଗୁଡ଼ିକ ଯେପରି ଭୟରେ ଏଣେ ତେଣେ ଧାଇଁବାକୁ ଲାଗିଲେ । ତାପରେ ହଠାତ୍ ସେଗୁଡ଼ିକ ଫାଟିଗଲେ ଏବଂ ଘର ପାତଳା ଧୂଆଁରେ ପୂର୍ଣ୍ଣ ହୋଇଗଲା ।

ବାମନ ବାବୁଙ୍କର ହଠାତ୍ ଖିଆଲ ହେଲା ତାଙ୍କର ଯୌବନ ଯାଇ ପ୍ରୌଢତ୍ୱ ଆସିଲାଣି । ଇସ୍...ଦେଖୁ ଦେଖୁ ଜୀବନର ପଇଁତିରିଶ ବର୍ଷ ଚାଲିଗଲାଣି—ଆଉ ବେଶୀ ହେଲେ ପନ୍ଦର କି କୋଡ଼ିଏ ବର୍ଷ —ମୋଟେ ଆଉ ପନ୍ଦର ବର୍ଷ !!!!—ବାମନ ବାବୁ ଆତଙ୍କିତ ହୋଇ ଉଠିଲେ ।—ମୋ ପରେ ଏଇ ସୁନ୍ଦର ଦୁନିଆରେ କେତେ ନୂଆ ନୂଆ ଘଟଣା ଘଟିବ, କେତେ ଆମୋଦ ପ୍ରମୋଦ ଚାଲିବ— ମୁଁ ତ ସେ ସବୁ ଦେଖି ପାରିବି ନାହିଁ, ସେ ସବୁ ଉପଭୋଗ କରି ପାରିବି ନାହିଁ । ବାମନ ବାବୁ ଗୋଟିଏ ଦୀର୍ଘ ନିଶ୍ୱାସ ପକାଇ ପ୍ରକାଣ୍ଡ ଦର୍ପଣ ସାମନାରେ ଠିଆହେଲେ ଏବଂ ଘରର ସବୁ ଆଲୁଅ ଜାଳି-ଦେଇ ଦର୍ପଣ ଆଡ଼କୁ ନଇଁ କାନ ପାଖର ବାଳ ଠେକ ନିରିଖିବାକୁ ଲାଗିଲେ । ଗୋଟିଏ ଧଳାବାଳ ଦେଖିବାକୁ ପାଇ ସେ ଆଉ ଗୋଟିଏ ଦୀର୍ଘ ନିଶ୍ୱାସ ପକାଇଲେ ଏବଂ ମନେ ମନେ ଆବୃତ୍ତି କରି କହିଲେ — ନା, ନା, ମରିବେ ଚାହିଁନା ଆମି ସୁନ୍ଦର ଭୁବନେ—ମୁଁ କିଛି ଉପଭୋଗ କରିନାହିଁ...ବାଲ୍ୟ ଓ ଯୌବନ ଗଲା । ଦାରିଦ୍ର୍ୟ, ପଢା ଏବଂ ଚାକିରିରେ ଉନ୍ନତି ପାଇଁ କଠିନ ପରିଶ୍ରମରେ—ମାତ୍ର ଚାରି ପାଞ୍ଚ ବର୍ଷ ହେବ ମୁଁ ସୁଖ, ପ୍ରତିପତ୍ତି ପାଇବାକୁ ଆରମ୍ଭ କରିଛି । ବାମନ ବାବୁ ଗୋଟି ଗୋଟି କରି ଧଳାବାଳ ସବୁ ଉପାଡ଼ି ପୁଣି ଆସି ଚୌକିରେ ବସି ପୁଣି ଧୂଆଁ ଆଡେ ଚାହିଁରହିଲେ । ଧୂଆଁର ଆଉ କୌଣସି ଆକାର ନାହିଁ । ପାତଳା ଧୂଆଁ ଯେପରି ମୁକ୍ତି ପାଇଁ ବ୍ୟାକୁଳ ହୋଇ ଘରର ପ୍ରତ୍ୟେକ ଦୁଆର ଓ ଝରକାରେ ଆଘାତ

କରୁଛନ୍ତି । ବାମନ ବାବୁ ଉଠି ଗୋଟିଏ ଝରକା ଖୋଲିଦେଲେ । ସମସ୍ତ ଧୂଆଁ ଯେପରି ମୁକ୍ତିର ଆନନ୍ଦରେ ସେହିବାଟେ ବାହାରିଗଲେ ।

ବାମନ ବାବୁ ଚୌକିରେ ବସି ପୁଣି କଫି ପାନ କରିବାକୁ ଲାଗିଲେ—ନା ଜୀବନଟାକୁ ଏଥର ନିଚ୍ଛିଡ଼ଭାବରେ ଉପଭୋଗ କରିବାକୁ ହେବ । ସେ ପୁଣି ଉଠି ପକେଟରୁ ଚାବି ବାହାର କରି ଆଲମାରିରୁ ମୂଲ୍ୟବାନ ବିଲାତି ମଦ ବାହାର କରି ଟିକିଏ ବେଶୀ ମାତ୍ରାରେ କଫି ପିଆଲାରେ ଢାଳି ପାନ କରି ଡାକିଲେ 'ଶୁଣୁଚ' ।

ଘରର ଦୁଆର ଠେଲି ପ୍ରବେଶ କଲେ ତାଙ୍କର ସ୍ତ୍ରୀ ଚପଳା । ବାମନ ବାବୁ ଚପଳାକୁ ଯେତେବେଳେ ବିବାହ କରିଥିଲେ ସେତେବେଳେ ସେ ଥିଲେ ଜଣେ ସାମାନ୍ୟ କିରାଣୀ । ଚପଳାର ବୟସ ସେତେବେଳେ ପନ୍ଦର । ସେ ଥିଲେ ନିହାତି ଦରିଦ୍ର କନ୍ୟା । ସୌନ୍ଦର୍ଯ୍ୟ ଭିତରେ ଧଳା ଚମଡ଼ା ଛଡ଼ା ଆଉ କିଛି ନ ଥିଲା । ନିହାତି ପାତଳ ସେ ଥିଲେ ସେତେବେଳେ, ତାଙ୍କର ଚାଲିଚଳଣି ମଧ୍ୟ ଥିଲା ନିପଟ ମଫସଲି ଭଳି । କେତେକଙ୍କୁ ଆଣି ବନ୍ଧୁମହଲରେ ବାମନ ବାବୁ କେତେଥର ଅପଦସ୍ଥ ହୋଇଛନ୍ତି ତାଙ୍କ ପାଇଁ । ଯେତେ ଅନୁରୋଧ ଅପମାନ କଲେ ବି ଚପଳା ସେ ଢଙ୍ଗ ଛାଡ଼ି ପାରି ନ ଥିଲେ । ବାମନ ବାବୁ ତାଙ୍କୁ ଚଷମା ପିନ୍ଧାଇଛନ୍ତି, କୁଞ୍ଚ କରି ଶାଢ଼ି ପିନ୍ଧାଇବାକୁ ଶିଖାଇଛନ୍ତି, ନିଜେ ପରିଶ୍ରମ କରି ଇଂରାଜୀ ପଢ଼ାଇଛନ୍ତି, ସନ୍ଧ୍ୟାବେଳେ ସାଙ୍ଗରେ କାଠଯୋଡ଼ି କୂଳକୁ ବୁଲି ବାହାରିଛନ୍ତି । କିନ୍ତୁ ସବୁ ବିଫଳ ହୋଇଥିଲା । ଯେତେ କହିଲେ ବି ଚପଳା ତାଙ୍କ ପଛେ ପଛେ ନିହାତି ମଫସଲି ଭଳି ଓଢ଼ଣାକୁ ହାତରେ ଚିବୁକ ତଳେ ଚାପି ଧରି ଅଦ୍ଭୁତ ଭଙ୍ଗୀରେ ଚାଲନ୍ତି,

କେବେହେଁ ତାଙ୍କ ପାଖେ ପାଖେ ଚାଲନ୍ତି ନାହିଁ । କିନ୍ତୁ ପରେ ବାମନ ବାବୁଙ୍କ ଉନ୍ନତି ଓ ଧନବୃଦ୍ଧି ସହିତ ଚପଳାଙ୍କର ମଧ୍ୟ ଚାଲିଚଲଣ ବଦଳିଛି । ଦିଲ୍ଲୀରେ ତିନି ବର୍ଷ ଚାକିରି ପରେ ବାମନ ବାବୁ ଯେତେବେଳେ ପୁଣି କଟକ ବଦଳି ହେଲେ ସେତେବେଳେ ତାଙ୍କର ବନ୍ଧୁମାନେ ତାଙ୍କର ସ୍ତ୍ରୀଙ୍କୁ ଦେଖି ଚମକି ପଡ଼ିଲେ । ଏ ଉନ୍ନତ ବକ୍ଷ, ସୁଗୋଲ ବାହୁ, ଚପଳ ଚାହାଣି, ପତଳା ଓଠ, କଥା କଥାକେ ଇଂରାଜି ଏ ସବୁ ଥିଲା କେଉଁଠି ! ବନ୍ଧୁମାନଙ୍କ ଆଶ୍ଚର୍ଯ୍ୟ ଭାବ ଦେଖି ବାମନ ବାବୁ ମନେ ମନେ ସେ ଦିନ ଗର୍ବ ଅନୁଭବ କରିଥିଲେ । ଚପଳା ବର୍ତ୍ତମାନ ନିଜେ ମୋଟର ଚଳାନ୍ତି ଏବଂ ସିନେମା ଭ୍ରମଣ ବା ପାର୍ଟିକୁ ଗଲେ ତାଙ୍କ ମୁଣ୍ଡରେ ଲୁଗା ନ ଥାଏ । ସେ ଚାଲନ୍ତି ଆଗେ ଆଗେ ଓ ବାମନ ବାବୁ ଚାଲନ୍ତି ପଛେ ପଛେ ଆନନ୍ଦରେ ।

ବାମନ ବାବୁ ତାଙ୍କୁ ଚାହିଁ ଆଜି ଅଧିକ ଆନନ୍ଦ ପାଇଲେ । ଜୀବନରେ ସୁଖ ଉପଭୋଗ କରିବାର ଆକାଂକ୍ଷା ତାଙ୍କର ସଫଳ ହୋଇଛି ସବୁ ଆଡ଼ୁ । ଏ ସୁଖକୁ ନିବିଡ଼ତର ଭାବରେ ଉପଭୋଗ କରିବାକୁ ହେବ, ଆଉ ବେଶୀ ଦିନ ନାହିଁ...ଆଉ ବେଶୀ ଦିନ ନାହିଁ ।

ଚପଳା ଆସି ତାଙ୍କ ଦେହକୁ ଲାଗି ବସିଲେ । ବାମନ ବାବୁ ତାଙ୍କୁ ଗାଢ଼ ଆଲିଙ୍ଗନ କରି ଚୁମ୍ବନ ଦେଇ କହିଲେ "ଚପଳା, ଆଜି ସନ୍ଧ୍ୟାରେ ଗୋଟିଏ ପାର୍ଟିର ଆୟୋଜନ କର । ମୁଁ ମୋର ସବୁ ବନ୍ଧୁମାନଙ୍କୁ ଆଜି ନିମନ୍ତ୍ରଣ କରିବି ।"

ଚପଳା ହସି କହିଲେ, "ମୁଁ ମଧ୍ୟ ସେଇକଥା ଭାବୁଥିଲି । ବାଃ, ଭାରି ଆନନ୍ଦରେ ଯିବ ଆଜି ସନ୍ଧ୍ୟା । ତୁମର ସବୁ ବନ୍ଧୁ ତ ଆଜି ବଡ଼ଲୋକ ହୋଇଛନ୍ତି ।"

ବାମନ ବାବୁ ଗର୍ବର ସହିତ ହସି କହିଲେ, "ହଁ, ସମସ୍ତେ ପ୍ରତିଷ୍ଠା ପାଇଛନ୍ତି । ସେମାନେ ସମସ୍ତେ ମୋର ଅନ୍ତରଙ୍ଗ ବନ୍ଧୁ ।" ଫୋନ ଉଠାଇ ବାମନ ବାବୁ କହିଲେ, "ଡ଼ବଲ ଫାଇଭ ଝିରୁ—ଇପ୍ସେସ୍ ପ୍ଲିଜ୍—ହ୍ୟାଲୋ—କିଏ ?—ହ୍ୟାଲୋ—ଓ—ଓ—ଓ, ମିସେସ୍ ସାନ୍ତ୍ରା—ନମସ୍କାର—ସୁଜପ୍ସ ଅଛି ?—ନାହିଁ ?—ଆଚ୍ଛା, ମିସେସ୍ ମହାନ୍ତି ଆପଣଙ୍କ ସହିତ କଥା କହିବାକୁ ଚାହାନ୍ତି ।"

ବାମନ ବାବୁ ଫୋନଟି ଚପଳା ହାତକୁ ବଢ଼ାଇ ଦେଲେ । ଚପଳା ଫୋନ ଧରି କହିଲେ, 'ମୀନା, ବାଃ ତୋର ତ ଆଉ ଦେଖାନାହିଁ । ଶୁଣୁ, ଆଜି ସନ୍ଧ୍ୟାବେଳକୁ ତୋତେ ଓ ମିଃ ସାନ୍ତ୍ରାଙ୍କୁ ନିମନ୍ତ୍ରଣ ରହିଲା, ଆସିବୁ, ବୁଝିଲୁ···ଧେତ···ଆଚ୍ଛା, ଆଚ୍ଛା, କହିବ ତାଙ୍କୁ···।'

ଦୁହେଁ ମିଳି ସାନ୍ଧ୍ୟମିଳନ ପାଇଁ ଖାଦ୍ୟ ତାଲିକା ପ୍ରସ୍ତୁତ କରିବା ପରେ ଚପଳା ଉଠିଗଲେ ଆୟୋଜନ କରିବାପାଇଁ । ବାମନ ବାବୁ ପୁଣି ଚୁରୁଟ ଲଗାଇଲେ ଏବଂ ପୁଣି ମୁହଁ ଗୋଲିଆ କରି ଧୂଆଁର କୁଣ୍ଡଳୀ ଉପରକୁ ଛାଡ଼ିବାକୁ ଯାଉଥିଲେ, କିନ୍ତୁ ହଠାତ୍ ଥମକି ଯାଇ ତଳକୁ ମୁହଁ କରି ଧୂଆଁର ସ୍ରୋତ ତଳକୁ ଛାଡ଼ି ଦେଲେ । ତାପରେ ପିଆଲାରୁ ଆଉ ଟିକିଏ ପାନ କରି ସେ ତାଙ୍କର ପ୍ରତ୍ୟେକ ବନ୍ଧୁଙ୍କୁ ଡ଼ାକିବାକୁ ଲାଗିଲେ ।—ମିଃ ଗ୍ରେଟରାଏ ଆଇ. ଏ. ଏସ୍; ମିଃ କାପୁର୍ ଆଇ. ପି. ଏସ୍, ପ୍ରଫେସର କର—ଆଉ କିଏ ରହିଲା ?—ହଁ ଅନନ୍ତ—ଲକ୍ଷପତି ବ୍ୟବସାୟୀ ଅନନ୍ତ ଏମ୍. ଏଲ୍. ଏ.—ହଁ ବିନୋଦ ଏକ୍‌ଜିକ୍ୟୁଟିଭ ଇଂଜିନିୟର—ଖୁବ୍ ପଇସା କଲାଣି ସେଠା—କାହିଁକି ନ କରିବ ? ନିଷ୍ଟପ୍ସ କରିବ—

ବାମନ ବାବୁ ଗୋଟି ଗୋଟି କରି ତାଙ୍କର ସମସ୍ତ କୀର୍ତ୍ତିମାନ୍ ବନ୍ଧୁମାନଙ୍କୁ ଡ଼ାକି ଗର୍ବ ଓ ଆନନ୍ଦରେ ଆରାମ ଚୌକିରେ ଆଉଜି ବସିଲେ ।

"ବେହେରା, ବେହେରା, ବାବୁ ଅଛନ୍ତି ?" ବାହାରୁ ଶୁଭିଲା ।

ବାମନ ବାବୁ ବିରକ୍ତ ହୋଇ କହିଲେ "କିଏ ?"

"ଆଜ୍ଞା, ମୁଁ ।"

"ମୁଁ କିଏ ? ଯାଅ ଏବ୍ବକ୍ଷଣି ସମୟ ନାହିଁ ।"

"ଆଜ୍ଞା, ଟିକିଏ ଶୁଣନ୍ତୁ ।"

"କିନ୍ତୁ, ତୁମେ ।"

"ମୁଁ ବିନୟ ।"

"କିଏ ବିନୟ ? କାଲି ଆସିବେ, ଯାଆନ୍ତୁ ।"

"ଆଜ୍ଞା, ମୁଁ ବାମନ ବାବୁଙ୍କ ବାଲ୍ୟବନ୍ଧୁ ବିନୟ ।"

ବାମନ ବାବୁଙ୍କର ଆଦୌ ମନେ ପଡ଼ିଲା ନାହିଁ ବିନୟ କିଏ । ସେ ଅପ୍ରସନ୍ନ ଭାବରେ ଦୁଆର ଖୋଲି ଦେଖିଲେ ଛିଡ଼ା ହୋଇଛି ଜଣେ ପ୍ରୌଢ଼, ପିନ୍ଧିଛି ଖଣ୍ଡେ ଅଧମଇଳା ଲୁଗା ଓ ଲେଞ୍ଚୁକୋଞ୍ଚୁ ସଫା ଜାମା । କାନରେ ଚୋଳି ଓ କାନ୍ଧରେ ଗାମୁଛା । ବାମନ ବାବୁ ଅପ୍ରସନ୍ନ ଓ ଆଶ୍ଚର୍ଯ୍ୟ ଦୃଷ୍ଟିରେ ତାଙ୍କୁ ଚାହିଁ ରହିଲେ ।

ଲୋକଟି ଆନନ୍ଦରେ ହସି କହିଲା, "ଚିହ୍ନି ପାରୁନା । ପିଲା-ବେଳ କଥା, ଗାଁ ସ୍କୁଲ କଥା, ମନେ ନାହିଁ ଭାଇ ! ସନ୍ଧ୍ୟାବେଳେ ନଈବାଲିକୁ ଯାଇ କେତେ ଠାକୁର ପୂଜା କରୁଥିଲୁ, ତୋତେ କେତେ ଶ୍ଳୋକ ଶିଖାଇଥିଲି ମୁଁ । ସେ ସବୁ ମନେ ପଡ଼ିଲେ ମୋ

ମନ କେଉଁଣ ହୋଇଯାଏ ରେ । ଠାକୁର ପୂଜା ପାଇଁ ତୁ କଅଣ କମ୍ ପାଗଳ ଥିଲୁ ! ଆଜ କାଲି ଅଛୁ ନା ସେ ସବୁ ?”

ବାମନ ବାବୁ ଆନନ୍ଦରେ ଅଭିନୟ କରି କହିଲେ, “ଆରେ, ବନ ! କଅଣ କରୁଚୁ ଆଜକାଲି ?”

“କଅଣ କରିବି ଭାଇ ଆଉ । ଗାଁରେ ପୈତୃକ ଯଜମାନ ଅଛି; କିଛି ଜମି ଅଛି । ଜମି ଚାଷ କରି, ଠାକୁର ପୂଜା କରି ଆନନ୍ଦରେ ଦିନ ଚଳିଯାଏ । ତୁମେ ସବୁ ବଡ଼ ଲୋକ ହେଲ ଦେଖି ମନଟା ଭାରି ଆନନ୍ଦ ହୁଏ । କଟକରେ ଟିକିଏ କାମ ଥିଲା, ଭାବିଲି ସବୁ ପିଲାବେଳ ସାଙ୍ଗମାନଙ୍କୁ ଥରେ ଦେଖିଯାଏ । ବୟସ ହେଲାଣି ଆସି, କେବେ ପାଚିଲା ବେଲ ପରି କିଏ ଖସି ପଡ଼ିବ କିଏ ଜାଣେ ? ମରିବାଟା ତ ଆଶ୍ଚର୍ଯ୍ୟ ନୁହଁ, ବଞ୍ଚିବାଟାହିଁ ଆଶ୍ଚର୍ଯ୍ୟ କଥା ।”

ବାମନ ବାବୁଙ୍କ ଆଖି କ୍ରୋଧରେ ଦପ୍ କରି ଜଳି ଉଠିଲା । ସେ ନିଜକୁ ସମ୍ଭାଳି ନେଇ କହିଲେ “ହଁ, ହଁ ତା ଠିକ୍ । ମରଣକୁ ମୋର ଭାରି ଡର ମାଡ଼ିଲାଣି –”

ବନୟ ହସି କହିଲା “ନାଇଁରେ ଡର କାହିଁକି ! ମରଣ ତ ସବୁ ଯୁଗରେ ସମସ୍ତଙ୍କ ପାଇଁ ସମାନ । ଯାହା ସମସ୍ତଙ୍କ ପାଇଁ ସମାନ, ତା ପାଇଁ ଡ଼ର କଅଣ ? ସବୁ ତାଙ୍କୁ ଅର୍ପଣ କଲେ, ଆଉ ଡର ନ ଥାଏ ରେ, ଆଉ ଡର ନ ଥାଏ । ତାଙ୍କଠାରୁ ଅଲଗା ହୋଇ ଜୀବନ କଟାଇଲେ ଡର ମାଡିବହେ ମରିବାକୁ ।”

ବାମନ ବାବୁଙ୍କର ହଠାତ୍ ମନେ ହେଲା ବନୟ ଯେପରି ବନ୍ଧୁ ନୁହଁ ତାର ମୃତ୍ୟୁ ଦୂତ ରୂପେ ଆସିଚି । ସେ ଦୁଆର ଆଉଜାଇ ଦେଇ କହିଲେ “ଯା, ଭାଇ ଯା । ମୋର ଅଫିସ ବେଳ ହୋଇ ଗଲାଣି ।”

ବିନୟ ଆଶ୍ଚର୍ଯ୍ୟ ହୋଇ କହିଲା, "ଆଜି ପରା ରବିବାର···"

"ଅଫିସରର ରବିବାର ନାହିଁ, ସବୁଦିନ କାମ। ଯା ଭାଇ ଯା।"

ବାମନ ବାବୁ ଦୁଆର ଲଗାଇଦେଇ ଫେରି ଦେଖିଲେ ତାଙ୍କ ପଛରେ ଚପଳା ଛିଡ଼ା ହୋଇଛନ୍ତି। ସେ ପୁଣି ଉନ୍ମାଦ ଭାବରେ ତାଙ୍କୁ ଆଲିଙ୍ଗନ କରି ତାଙ୍କୁ ଟେକି ନେଇ ଚୌକି ଉପରେ ବସିଲେ।

ଚପଳା ପଚାରିଲା 'ସେ ତୁମର ବାଲ୍ୟବନ୍ଧୁ ?'

ବାମନ ବାବୁ ଅବଜ୍ଞା ଭରି କହିଲେ, "ହଁ କହୁଚି ତ ସିଏ, ମୋର ତ ମନେ ପଡୁନାହିଁ। ଗୁଡ଼ଃ—ସବୁ ପ୍ରସ୍ତୁତ ତ ?"

"ହଁ।"

"ବାଃ, ତୁମେ ନ ଥିଲେ ମୋର—" ବାମନ ବାବୁ ଆନନ୍ଦରେ ଚପଳାକୁ ଚାହିଁ ରହିଲେ।

× × ×

ସନ୍ଧ୍ୟାବେଳେ ସବୁ ବନ୍ଧୁ ସସ୍ତ୍ରୀକ ଆସିଲେ। ଚାହା ଟେବୁଲ ହସ କୌତୁକ ଓ ଖାଦ୍ୟରେ ଭରି ଉଠିଲା। କଥା କଥାକେ ଅନନ୍ତ ବାବୁ କହିଲେ "ଆରେ ବାମନ, ସକାଳେ ବିନୟ ତୋ ଘରକୁ ଆସିଥିଲା ? ତୋର ଭାରି ପ୍ରଶଂସା କରୁଥିଲା ସିଏ। ସେ କହିଲା ତୁ ତାକୁ ଡ଼ାକି ଜଳଖିଆ ଖାଇବାକୁ ଦେଲୁ। ମିସେସ୍ ମହାନ୍ତିଙ୍କ ସହିତ ପରିଚୟ କରାଇ ଦେଲୁ। ମୋର ତ ଭାଇ ଆଦୌ ମନେ ପଡ଼ିଲା ନାହିଁ ତାକୁ। କଅଣ କରିବ ଭାଇ। ସେତେବେଳେ ବି ଭାରି ବ୍ୟସ୍ତ ଥିଲି ଅନ୍ୟ କାମରେ। ସେ ବି ଏପରି ବ୍ୟବହାର କଲା ଯେ ମୋର ସ୍ତ୍ରୀ ବିରକ୍ତ ହୋଇ ଉଠିଲା। ବନ୍ଧୁ ହେଲେ ବି ଗୋଟାଏ ସୀମା ଅଛି ତ।"

ଅଧ୍ୟାପକ କର କହିଲେ, 'ଆରେ, ମୋ ଘରକୁ ସେ ତ ଯାଇଥିଲା ସକାଳେ । ଆଜି ଖିଆବେଳେ ମୁଁ ତାକୁ ଖାଇବାକୁ ଡ଼ାକିଥିଲି । ଓଃ, ଖାଇ ସେ ଭାରି ଆନନ୍ଦ ପାଇଲା । ମୋ ମନଟା ଭାରି ତୃପ୍ତି ପାଇଲା ତାକୁ ଖୋଇ ।"

ବାମନ ବାବୁ କହିଲେ "ହଁ, ଭାଇ ବାଲ୍ୟ ବନ୍ଧୁମାନଙ୍କୁ କଅଣ ସହଜରେ ଭୁଲି ହୁଏ । ତାକୁ ତ ତ ଆଜି ଏ ସାନ୍ଧ୍ୟ ମିଳନ ପାଇଁ ନିମନ୍ତ୍ରଣ କରିଥିଲି । ତାର କଣ ଅନ୍ୟ କାମ ଅଛି ବୋଲି ସେ ଗାଁକୁ ଚାଲିଗଲା ବୋଧହୁଏ ।"

ହସ କୌତୁକ ପୂର୍ବପରି ଚାଲିଲା । ବାମନ ବାବୁ ଆନନ୍ଦ ଓ ଗର୍ବରେ ସମସ୍ତଙ୍କୁ ଆପ୍ୟାୟିତ କରିବାକୁ ଲାଗିଲେ ।



# ଚଳଚ୍ଚିତ୍ର

ଫେ ଡ୍‌ଇନ୍—

ଜମିଦାର ଭୂପେନ୍ଦ୍ର ନାରାୟଣ ଭ୍ରମରବର ରାଏ ଜଳଖିଆ ସାରି ହାତ ଧୋଇବାକୁ ବାହାରିଲେ ବାଡ଼ିପଟକୁ । ଚାକର ପାଣିଢାଳ ଗାମୁଛା ଧରି ଆଗେ ଆଗେ ଗଲା । ବୋଷେଇ ଖଞ୍ଜା ପାର ହୋଇ ଖମାର ଖଞ୍ଜା ପାଖରେ ନଳାମୁହଁ । ଖମାର କଣରେ ଯେଉଁଠି ବଡ଼ ବଡ଼ ଘୁମ ସବୁ ରହିଛି, ସେଇଠି ଗୋଧୂଳିର ଅନ୍ଧାର ମେଞ୍ଚାଏ ଜମି ସାରିଲାଣି । ଭୂପେନ୍ଦ୍ର ସେ କଣବାଟେ ଚାଲିଯିବାବେଳେ ଅନ୍ଧାର ଭିତରେ ଧଳା ହୋଇ କଅଣ ଟିକିଏ ହଲିଗଲା । ଭୂପେନ୍ଦ୍ର ଦେଖି ନ ଦେଖିଲା ପରି ମୁହଁ ହାତ ଧୋଇ ଗାମୁଛାରେ ପୋଛି ଅଜ ଖଞ୍ଜାକୁ ନ ଫେରି ବାଡ଼ିପଟ ଦେଇ ଚାଲିଗଲେ କଚେରି ଘରକୁ । ଗଲାବେଳେ କହିଗଲେ, "ମଦନା, ପାନ, ନଲଠଣି ଶୀଘ୍ର ନେଇଆ" ।

ଭୂପେନ୍ଦ୍ର ଚାଲିଯିବା ପରେ ଅନ୍ଧାର ଭିତରୁ ଗୋଟିଏ ଦୀର୍ଘ ନିଶ୍ୱାସ ଶୁଭିଲା । ସେ ଦୀର୍ଘ ନିଶ୍ୱାସରେ ଥିଲା ଗଭୀର ବେଦନାର ନିର୍ଲିପ୍ତତା ।

—କଟ୍—

ଫ୍ଲାଶ୍‌ ବ୍ୟାକ୍‌—

ଭୂପେନ୍ଦ୍ରଙ୍କୁ ବର୍ତ୍ତମାନ ବୟସ ୩୫ । ଦଶବର୍ଷ ଆଗର କଥା । ଭୂପେନ୍ଦ୍ର କଲେଜର ପଢ଼ା ସାରି ଏମ୍‌. ଏ. ବି. ଏଲ୍‌. ପାଶ୍‌ କରି କଟକରୁ ନିଜ ଘରକୁ ଫେରିଛନ୍ତି । ଘରେ ବୋଉ ସନ୍ଧ୍ୟାବାଘ୍ରପୂଣି ଫାଲ୍‌ ବସାଇଛନ୍ତି । ଠାକୁରଘର ଖଞ୍ଜାରୁ ଖଞ୍ଜଣି ଓ ଗିନିର ତାଳମାନ ଭିତରେ ଗାୟକର ପାଟି ଶୁଭୁଛି । "କାଞ୍ଚନପୁର ଯୁବରାଜ କହିଲେ, ମୁଁ ଯଶ ଅର୍ଜିବି । ମହାକବି କାଳିଦାସ କହିଛନ୍ତି, ରଘୁବଂଶ ପ୍ରଥମ ସର୍ଗରେ, ଯଶସେ ବିଜିଗୀଷୁଣାଂ ପ୍ରଜାୟୈ ଗୃହ-ମେଧିନାମ୍‌ । ଯଶ ପାଇଁ କ୍ଷତ୍ରିୟ ରାଜାମାନେ ରାଜ୍ୟ ଜୟ କରନ୍ତି । ତେଣୁ..." ଇତ୍ୟାଦି ଇତ୍ୟାଦି ।

ଭୂପେନ୍ଦ୍ର ମା'ଙ୍କୁ ପ୍ରଣାମ କରି କହିଲେ, "ବୋଉ, ମୁଁ ବିଲାତ ଯିବି । ବଡ ବାରିଷ୍ଟର ହେବି । ବେଶୀ ନୁହେଁ ବର୍ଷଟିଏ ରହିବି । ତୁ ଅନୁମତି ଦେ" ।

ମା' ନିର୍ବାକ ଭାବରେ ପୁଅଆଡେ ଚାହିଁ ରହିଲେ । ଆଖିରୁ ତାଙ୍କର ଦୁଇଧାର ଲୁହ ଅବିରାମ ଝରିବାକୁ ଲାଗିଲା । କିଛିକ୍ଷଣ ପରେ ଲୁହ ପୋଛି ସେ କହିଲେ, "ତୋର ବାରବର୍ଷ ବୟସରେ ତୋର ବାପା ଚାଲିଗଲେ । ତୁ ଗୋଟିଏ ବୋଲି ପୁଅ । ଧନର ଅଭାବ ନାହିଁ । ବସି ଖାଇଲେ ସାତ ପୁରୁଷ ସରିବ ନାହିଁ । ତୋତେ ମୁଁ ଦଣ୍ଡେ ହେଲେ ଆଖି ଆଡୁଆଳ କରି ନାହିଁ । ତୁ ଚାଲିଗଲେ ମୋ ଜୀବନ ରହିବ ତ ?"

ଭୂପେନ୍ଦ୍ର ସ୍ୱରକୁ ଚାପିଦେଇ କହିଲେ, ବୋଉ, ଏଇଥି ପାଇଁ ତ...ନା, ମା, ମୁଁ ଯିବି, ଯିବାର ସବୁ ଯୋଗାଡ କରି ସାରିଛି" ।

ମା' ମୁଣ୍ଡରେ ହାତ ଦେଇ ବସି ପଡ଼ିଲେ । ତା ପରେ ମୂର୍ଚ୍ଛା ଗଲେ । ଘରଆଡେ ଚହଳ ପଡ଼ିଗଲା । ଭୂପେନ୍ଦ୍ର ମା'ଙ୍କୁ କୋଳକୁ

ଟାଣିନେଇ ପାଣି ଗ୍ଲାସଟମାର ହେ୍ୱାସ୍ କରିଇ ଦୀର୍ଘନିଶ୍ୱାସ ପକାଇ କହିଲେ, "ମୁଁ ତୋତେ ଛାଡ଼ି କେଉଁଠାକୁ ଯିବ ନାହିଁ" ।

—ଓ୍ୟାଇଫ୍—

ଭୂପେନ୍ଦ୍ର ନତମସ୍ତକରେ ମାତାଙ୍କ ସମ୍ମୁଖରେ ଦଣ୍ଡାୟମାନ । ପାନ ଭାଙ୍ଗୁ ଭାଙ୍ଗୁ ମା କହିଲେ, "ଭୁପ, ତୋ ବାପା ମଲାବେଳେ କହି ଯାଇଥିଲେ ରାଜନପୁର ଜମିଦାରଙ୍କ ଝିଅ ସହିତ ତୋର ବାହା ଦେବାକୁ । ଝିଅଟିକୁ ମୁଁ ଦେଖିନାହିଁ । ଶୁଣିଚି ଦେଖିବାକୁ ମନ୍ଦ ନୁହଁ । ଭଲ ପାଠଶାଠ ପଢ଼ିଚି, ପାଶ୍ କରିଚି, ବୃତ୍ତି ପାଇଚି । ବାପ ଅନ୍ତେ ସେଇ ସବୁ ସମ୍ପତ୍ତିବାଡ଼ି ପାଇବ । ଆଉ କେହି ନାହାନ୍ତି ତା ବାପର । ଝିଅଟିକୁ ଦେଖିବା ଦରକାର ନାହିଁ । ତୋ ବାପା ଆଜ୍ଞା ଦେଇ ଯାଇଚନ୍ତି । ଦେଖି ଆଉ ଲାଭ କଅଣ । କାଲି ରାଜନ-ପୁର ଗୁମାସ୍ତା ଆସିଥିଲା । ଆଉ ମାସ ଦଶଦିନକୁ ଦିନ ଠିକ୍ କରିବି" ।

ଭୂପେନ୍ଦ୍ରର ଆଉ ଗୋଟିଏ ସ୍ୱପ୍ନ ଭାଙ୍ଗିଗଲା । ମନଟା ତାଙ୍କର ଏଥର ଭାରି ଚିଡ଼ି ଉଠିଲା । କିନ୍ତୁ କିଛି ନ କହି ସେ ମୁହଁ ତଳକୁ ପୋତି ଛିଡ଼ା ହେଲେ ।

ମା କହିଲେ, "କିରେ କହୁନୁ, ଲାଜ କଅଣ ? ହଉ ବୁଝିଲି, ଯା, ଯା" ।

ଭୂପେନ୍ଦ୍ର କିଛି ଗୋଟାଏ କଡ଼ୁ କଥା କହିବାକୁ ଯାଉଥିଲେ; କିନ୍ତୁ କେବଳ "ବୋଉ..." କହି ଓଠରେ ଓଠ ଚାପି ନୀରବ ରହିଲେ ।

ମା ହସି ହସି କହିଲେ, "କହ, କହ, ଦେଖିବାକୁ ଯିବୁ ଝିଅକୁ...ହଉ..."

"ନା, ମୁଁ ସେ କଥା କହୁ ନ ଥିଲି, କହୁଥିଲି···ନା···ଥାଉ" କହି ଭୂପେନ୍ଦ୍ର ଚାଲିଗଲେ ।

—ତିଆଇପ୍—

ମଧୁଶଯ୍ୟା ରାତି । ରାତି ଏଗାର ବାଜିଲାଣି । ତୁଳସୀର ସମ-ବୟସୀ ଗୋଟିଏ ବାଳିକା ତୁଳସୀକୁ ଧରି ଆଣି ଘରେ ଖଟ ଉପରେ ବସାଇ ଦେଇ ତାର ଓଢ଼ଣୀ ଟେକି ଚାହିଁ ରହିଲା । ବାଳିକାଟି ଏହି ଗାଁର । ଏପର୍ଯ୍ୟନ୍ତ ବିବାହ ହୋଇନାହିଁ, ନାଁ ତାର ଲବଣୀ । ଲବଣୀର ଚରିତ୍ର ତୁଳସୀର ଚରିତ୍ରର ଠିକ୍ ଓଲଟା । ତୁଳସୀ ଧୀର-ସ୍ଥିର, ସଂଯତବାକ୍, ବୁକୁ ଫାଟିଗଲେ ମୁହଁରୁ ପଦେ କଥା ବାହାରିବ ନାହିଁ । ଲବଣୀ ଚପଳା, ସେ ଯେଉଁଠି ଥିବ ତାର କଳହାସ୍ୟରେ ସେ ସ୍ଥାନ ଉଚ୍ଛୁଳି ଉଠୁଥିବ । ତୁଳସୀର ଦେହର ରଙ୍ଗ ଘୋର କାଳିଆ, କପାଳ ଉଚ୍ଚ, ଦନ୍ତପଂକ୍ତି ଈଷତ୍ ଉନ୍ନତ । କିନ୍ତୁ ଲବଣୀର ଦେହର ରଙ୍ଗ ବିଗଳିତ କାଞ୍ଚନ ପରି । ତୁଳସୀ ଲବଣୀକୁ ଦେଖି ଚମତ୍କୃତା ହେଲେ ।

ତୁଳସୀକୁ ଦେଖି ଲବଣୀ ମନରେ କି ଭାବ ଉପୁଜିଲା କେଜାଣି ସେ ଖିଲି ଖିଲି ହସି ଉଠିଲେ । ତୁଳସୀ ଅପ୍ରସ୍ତୁତ ହୋଇ ଓଢ଼ଣୀ ଟାଣି ତଳକୁ ମୁହଁ ପୋତି ବସି ରହିଲେ । ଲବଣୀ ତାର ଓଢ଼ଣୀ ତଳକୁ ଖସାଇ ଦେଇ ଚିବୁକ ଟେକି ଧରି କିଛିକ୍ଷଣ ଚାହିଁ ହଠାତ୍ ତୁଳସୀ ମୁହଁରେ ଗୋଟିଏ ଆମ୍ବକଷି ଗେଞ୍ଜି ଦେଇ କହିଲେ "ଆଜଠୁ ତୁମେ ମୋର ଆମ୍ବକଷି ।"

ଦୁଇ ସଖୀଙ୍କ ଭିତରେ ଅନେକକ୍ଷଣ କଥାହେଲା । ଲବଣୀ କହିଲେ "ଆମ୍ବକଷି ! ଆସିଲି ଯଦି ଏତେ ଡେରିରେ କାହିଁକି

ଆସିଲ । ଆଜ କେତୁଟା ଦିନ ପରେ ତ ମୁଁ ଚାଲିଯିବି ବାହାହୋଇ ବହୁତ ଦୂର ଦେଶକୁ । ମୋତେ କିନ୍ତୁ ଭୁଲିବ ନାହିଁ, କୁହ ।"

ତୁଳସୀ ଲବଣୀର ହାତରେ ହାତ ରଖି କେବଳ ଅନାଇ ରହିଲେ । ଆଖି ତାଙ୍କର ଛଳ ଛଳ ହୋଇଗଲା । ଲବଣୀ ଅଧୀର ଭାବରେ କାନ୍ଦି ପକାଇଲେ ।

ଅତିଥିମାନେ ଖିଆପିଆ ସାରି ବିଦାୟ ନେଲେଣି । ଜମିଦାର ଘର ପ୍ରାୟ ନୀରବ ହୋଇ ଆସିଲାଣି । କେବଳ ବାଡ଼ିପଟେ କୁକୁର-ମାନଙ୍କର କଜିଆ ଓ ଠାକୁର ଖଞ୍ଜାରୁ ପୂଜାବାଲାମାନଙ୍କର ଗୀତ ଭାସି ଆସୁଛି ।

ଲବଣୀ କହିଲେ "ଆମ୍ଭକଣି ! ଯାଏଁ ଏଥର । ମନେ ମନେ କହୁଥିବ ପୋଡ଼ାମୁହାଁ କାହିଁକି ବସି ବକର ବକର ହେଉଛି । ମୁଁ ବୁଝିପାରୁଛି ଯେ, ନା ଯାଏ ଏଥର । ସାଆନ୍ତେ ଆସିବେ ଏଇକ୍ଷଣି ।"

ଲବଣୀ ଚାଲିଗଲେ । ଭୟ, ଆନନ୍ଦ, ଲଜ୍ଜା, ଅନିଶ୍ଚିତତା ଆଦି ନାନା ଭାବନାରେ ତୁଳସୀଙ୍କ ନିଶ୍ୱାସ ରୁଦ୍ଧ ହୋଇ ଆସିଲା । କିଛିକ୍ଷଣ ପରେ ପ୍ରବେଶ କଲେ ଭୂପେନ୍ଦ୍ର । ତୁଳସୀ ଓଢ଼ଣା ଟାଣି ବସି ରହିଲେ । ଭୂପେନ୍ଦ୍ର ଆସି ନବ-ବଧୂର ଓଢ଼ଣା ଟେକି ଚାହିଁଲେ । ତୁଳସୀ ଦେବୀଙ୍କ ଗୁଣ୍ଡରୁ ଅତଡ଼ା ଖସି ପଡ଼ିଲା । ସେ ଜୀବନରେ ସ୍ୱାମୀସୁଖ ପାଇବେ କି ଦୁଃଖ ପାଇବେ ସ୍ୱାମୀଙ୍କର ଏଇ ଚାହିଁବାରେ ହିଁ ଚିରଦିନ ପାଇଁ ଗୋଟାଏ ନିଷ୍ପତ୍ତି ହୋଇଯିବ । ଭୂପେନ୍ଦ୍ର ଚାହିଁ ଓଢ଼ଣା ପକାଇ ଦେଇ ଅନ୍ୟଆଡେ ମୁହଁକରି ପଡ଼ି ରହିଲେ । କ୍ରୋଧ, ଅପମାନ, ହତାଶାରେ ସେ କାନ୍ଦି ପକାଇଲେ । ତୁଳସୀ ପଥର ମୂର୍ତ୍ତି ଭଳି ସେମିତି ବସି ରହିଲେ । ଆଖିରୁ ତାଙ୍କର ଲୁହଧାର ଅବିରାମ ଝରିବାକୁ ଲାଗିଲା । କିନ୍ତୁ ମୁହଁରୁ ସାମାନ୍ୟ

ଟିକିଏ ଶବ୍ଦ ବାହାରିଲା ନାହିଁ । ଥରେ ଭାବିଲେ ସ୍ୱାମୀଙ୍କ ଗୋଡ଼ଧରି କହିବେ, "ମୋର ଆଉ କିଛି ଲୋଡ଼ା ନାହିଁ, ଖାଲି ଦୂରରୁ ତୁମ ପୂଜା କରିବାକୁ ମୋତେ ଅନୁମତି ଦିଅ ।" କିନ୍ତୁ ଏତିକି କହିବାକୁ ଯେଉଁ ସୌନ୍ଦର୍ଯ୍ୟ ଦରକାର ତା ମଧ୍ୟ ତାଙ୍କର ନାହିଁ ।

ଠାକୁରଘଞ୍ଜାରୁ ପୂଜାବାଲାମାନଙ୍କର ପାଟି ଶୁଭୁଥିଲା "ମଉନବଣ୍ଡ କହିଲେ, ନାଥ···" ଗାୟକ କହିଲେ । ପାଳିଆ କହିଲା, "ଓ" ।

"ନାଥ, ମୁଁ କୁରୂପା । ହେଲେ କେତେ ଦାସୀ ଆପଣଙ୍କର ଅଛନ୍ତି । ମୋତେ ସେଇ ଦାସୀମାନଙ୍କ ପରି ତୁମର ପୂଜା କରିବାକୁ ଦିଅ । ଏଇଠି କବିଗୁରୁ ରବୀନ୍ଦ୍ରନାଥ କହିଲେ—"

"କଅଣ କହିଲେ···"

"କହିଲେ, ଆଁ ହାଁ ।···ଆଁ···ଆଁ···ପରାଣେ ଭଲବାସା କେନ ଗୋ···ଓ···ଓ ଦିଲେ···ଏ···ଏ, ରୂପ ନା ଦେଲ ଯଦି ବିଧି ହେ ···ଏ···ଏଏଏ···ଏ । ବୋଲେ, ପୂଜାର ତରେ ହିୟା, ଉଠେଚି ଉଚ୍ଛୁଲିୟା, ପୂଜିବ ତାରେ ଗିୟା କି ଦିଏ···ଏଏଏ···ଏ"

ଝମ୍ ଝମ୍ ଝମ୍ । ······ବଡ଼ଝାଞ୍ଜି କହିଲା ଗୁମ୍ ଗୁମୁ ଧା ଧିନ୍‌ନା, ତାକଧିନ୍‌ନା···ଖୋଳ କହିଲା ।

—ଡ୍ୟାଇପ୍—

ପରଦିନ ସଞ୍ଜ । ଖାଇସାରି ଭୂପେନ୍ଦ୍ର ବାହାରିଲେ କଚେରି ଘରେ ଶୋଇବାକୁ । ମା ପଚାରିଲେ, "କରେ ସିଆଡ଼େ କୁଆଡ଼େ ଯାଉଚୁ ?"

"ନା, ବୋଉ, କାଲି ସକାଳୁ ହରିପୁରକୁ ଯିବ ବାକିଆ ଖଜଣା ଆଦାୟ କରିବାକୁ । ଆଜି ରାତି ଭିତରେ କାଗଜ ପତ୍ର ସଜାଡ଼ି ରଖିବାକୁ ହେବ ।"

ମା ଦୀର୍ଘ ନିଶ୍ୱାସ ପକାଇ ଉଠି ଛିଡ଼ା ହୋଇ ଦେଖିଲେ, ବୋହୂ ପଛରେ ଛିଡ଼ା ହୋଇଛି । ବୋହୂକୁ ଦେଖି ମନେ ମନେ ସେ କହିଲେ—"ଅଲକ୍ଷଣୀଟା । କାହିଁକି ଅରେ ଦେଖିବାକୁ ଗଲିନାହିଁ ମୁଁ । ମୋ ପୁଅ କଅଣ କରିବ ଲୋ । ହେ ମା ମଙ୍ଗଳା, ନେଇଯାଅ, ନେଇଯାଅ, ଦରକାର ନାହିଁ ଏ ବୋହୂ ମୋର ।"

ତୁଳସୀ ଗୋଟିଏ ଦୀର୍ଘନିଶ୍ୱାସ ପକାଇ ଯାଇ ଖଟ ଉପରେ ବସିଲେ । ଆଖିରୁ ତାଙ୍କର ପାଣି ଶୁଖି ଯାଇଥିଲା । ଖଟ ଉପରୁ ଯେତେବେଳେ ଉଠିଲେ ସେତେବେଳେ ସୁନ୍ଦରୀ ଫାଟିଲାଣି ।

ସେଇଦିନୁ ଭୂପେନ୍ଦ୍ର ରାତିରେ ଆଉ ଶୋଇବା ଖଞ୍ଜାକୁ ଆସନ୍ତି ନାହିଁ ।

—କଟ୍—

ଦୁଇବର୍ଷ ପରେ ।

ଭୂପେନ୍ଦ୍ର କଚେରି ଘରେ କାର୍ଯ୍ୟବ୍ୟସ୍ତ । କିନ୍ତୁ ମନ ତାଙ୍କର ଉଦାସୀନ । ଲେଖୁ ଲେଖୁ କଲମ ହାତରୁ ଖସି ପଡୁଛି । କଚେରି ଘର ଘଡ଼ିରେ ଢ଼ଂ ଢ଼ଂ କରି ଦୁଇଟା ବାଜିଲା ।

—ଓ୍ୱାଇପ୍—

ଆହୁରି ଦୁଇବର୍ଷ ପରେ । ଭୂପେନ୍ଦ୍ର ଧର୍ମକର୍ମାନୁରାଗୀ, ସଂସାର ପ୍ରତି ବୀତରାଗ । କଚେରି ଘରେ ଗୁରୁଦେବ ବସିଛନ୍ତି ।

ଭୂପେନ୍ଦ୍ର ପଚାରିଲେ "ମୋତେ ବାଟ ଦେଖାଇ ଦିଅ । ଏ ଜୀବନକୁ ସବୁ ଦିଗରୁ ଉପଭୋଗ କରିବି ନା ଉପଭୋଗର ସମସ୍ତ ଦୁଆର ବନ୍ଦ କରିଦେଇ କିଛି ସାଧନ କରିବି ?"

"ବତ୍ସ" ଗୁରୁଦେବ ଭୂପେନ୍ଦ୍ର ମୁଣ୍ଡ ଉପରେ ହାତ ରଖି କହିଲେ, "ଇନ୍ଦ୍ରିୟନିରୋଧ କଲେ ତାର ବାହାର ପ୍ରକାଶ ସିନା ବନ୍ଦ ହୋଇ-

ପାରେ; କିନ୍ତୁ ଭିତରେ ବିକୃତି ସୃଷ୍ଟି କରେ । ସେ କୃଚ୍ଛ୍ର ସାଧନାରେ କିଛି ଲାଭ ନାହିଁ···"

"ତେବେ ? ତେବେ କଅଣ···"

"ହଁ, ହଁ । ଭୋଗଦ୍ୱାରା ତ୍ୟାଗ ଆଣିବାକୁ ହେବ । ଗୀତାରେ ଭଗବାନ ଶ୍ରୀକୃଷ୍ଣ କହିଛନ୍ତି—"ମନରେ ଇନ୍ଦ୍ରିୟ ଲାଳସା ରଖି ଯେ କେବଳ କର୍ମେନ୍ଦ୍ରିୟ ସଂଯତ କରେ, ସେ ମିଥ୍ୟାଚାରୀ । ତେଣୁ ଭଗବାନ୍ କହିଛନ୍ତି, ଜୀବନ ପ୍ରକୃତିର ଅନୁଗାମୀ, ନିଗ୍ରହ ଦ୍ୱାରା କୌଣସି ଲାଭ ନାହିଁ । ଉପଭୋଗ କର, ଉପଭୋଗ କର; ଦେଖିବ ତ୍ୟାଗ ଆପେ ଆପେ ଆସିଯିବ ।"

ଭୂପେନ୍ଦ୍ର ମାନସପଟରେ ଗୋଟିଏ ସୁନ୍ଦର ମୁହଁ ଅଙ୍କିତ ହୋଇଗଲା ।

—ୱ୍ୟାଇପ୍—

ଭୂପେନ୍ଦ୍ର ପରଦିନ ବାହାରିଲେ ହରିପୁର ।

—ୱ୍ୟାଇପ୍—

କିଛିଦିନ ପରେ ମା ପୁଅର ବିପଥ ଗମନରେ ବ୍ୟଥିତା । ତୁଳସୀ ପାନବଟା ରଖି ଦେଇଗଲେ । ମା କହିଲେ, "ମରୁନାହୁଁ ବୋହୂ । ଆମ ବାଡ଼ ପୋଖରୀରେ ଏତେ ପାଣି···"

ତୁଳସୀ ଦୀର୍ଘନିଶ୍ୱାସ ପକାଇ ଛିଡାହୋଇ ରହିଲେ ।

ମା ବକି ଚାଲିଲେ, "ପୁଅଟା ମୋର ହରିପୁରରେ ରହିଲା । ତୋରି ପାଇଁ ଲୋ ବାନରୀ । ମୁଁ କାଲି ଯିବି ପୁଅକୁ ଫେରାଇ ଆଣିବି ଯେମିତି ହେଲେ ।"

ତୁଳସୀ ଦେଖି ନୀରବରେ ଚାଲିଗଲେ ।

—ୱ୍ୟାଇପ୍—

ଭୂପେନ୍ଦ୍ର ଫେରିଚନ୍ତି । କିନ୍ତୁ ଖଞ୍ଜା ଭିତରକୁ ନୁହଁ । ବାହାରେ ବଢ଼େଇ ଘରେ ତାଙ୍କର ଶୋଇବାର ସ୍ଥାୟୀ ବନ୍ଦୋବସ୍ତ କରିଛନ୍ତି ।

—ଓ୍ୱାଇପ୍—

[ଭୂପେନ୍ଦ୍ର ଦିନ ରାତି ଭିତରେ ଦୁଇଥର ଖଞ୍ଜା ଭିତରକୁ ଆସନ୍ତି—ଥରେ ଦିନ ଦଶଟା ବେଳେ ଖାଇବାକୁ, ଆଉଥରେ ସନ୍ଧ୍ୟାବେଳେ ଜଳଖିଆ ପାଇଁ । ରାତିର ଖାଇବା ତାଙ୍କର ବଢ଼େଇ ଘରକୁ ଯାଏ । ଭୂପେନ୍ଦ୍ର ଫେରିବା ପରେ ପାଞ୍ଚବର୍ଷ ବିତି ଗଲାଣି । ନିତି ଭୂପେନ୍ଦ୍ର ଜଳଖିଆ ଖାଇ ସାରି ଯେତେବେଳେ ମୁହଁ ଧୋଇବାକୁ ଖମାର ଖଞ୍ଜାକୁ ଯାଆନ୍ତି, ସେତେବେଳେ ଘୁମ କଣ ଅନ୍ଧାରରୁ ଗୋଟିଏ ଦୀର୍ଘନିଶ୍ୱାସ ବାହାରି ଆସେ ଆଶା, ଆବେଦନ ନେଇ । ସେ ଦିନ ମଧ୍ୟ ସେମିତି ।]

ଭୂପେନ୍ଦ୍ର ଚାଲିଯିବା ପରେ ତୁଳସୀ ଅନ୍ଧାରରୁ ବାହାରି ବାଡ଼ି କବାଟ ଯେମିତି ଖୋଲିଚନ୍ତି ଝଙ୍କାଳିଆ କାମିନୀଗଛ ତଳର ଗହଳିଆ ଅନ୍ଧାର ଭିତରୁ "ଖେଁ ଖେଁ" ଗୋଟାଏ ଶବ୍ଦ ଶୁଭିଲା । ତୁଳସୀ ଭଲ କରି ଚାହିଁ ଦେଖିଲେ ଅନ୍ଧାର ଭିତରେ ଧଳା ହୋଇ ମେଣ୍ଢାଏ କଅଣ ଦିଶୁଚି । ଆହୁରି ଭଲ କରି ଚାହିଁ ଦେଖିଲେ ସେ ଧଳା ମେଣ୍ଢାକ କୁଦି କୁଦି ତାଙ୍କରି ଆଡ଼କୁ ଆସୁଚି । ତୁଳସୀ ଏଥର ଭୟରେ ଯେମିତି "ବୋ···" ବୋଲି ପାଟିକରି ଉଠିଲେ ସେ ଧଳା ମେଣ୍ଢାକ ଛିଡ଼ା ହୋଇ ହାତ ବଢ଼ାଇ ତାଙ୍କ ପାଟି ଚପିଧରି କହିଲା, "ଆମ୍ବକଷି, ଡରି ଗଲୁକି ? ମୁଁ ପଗ !"

ତୁଳସୀ ଆଖିରୁ ପାଣି ଝରି ପଡ଼ିଲା । ସେ କହିଲେ, "ଆମ୍ବକଷି ଏତେ ଦିନକେ ମୋର ମନେ ପଡ଼ିଲୁ ! ଶାଶୁଘର କଅଣ ଆଉ

କେହି କରୁ ନାହାନ୍ତି ? ବାପଘରକୁ କଅଣ ସମସ୍ତେ ତୋ ପର ପାଶୋରି ଯାଉଛନ୍ତି ? କେବେ ଆସିଲୁ ?"

ଲବଣୀ କହିଲେ, "ଆଜି ଆସିଲି । ହଠାତ୍ ଆସି ତୋତେ ଦେଖାଦେଲେ ଯେଉଁ ଆନନ୍ଦ ତୁ ପାଇବୁ ତାର ପାଇଁ ଆଗରୁ କିଛି ଜଣାଇ ନାହିଁ । ଆମ୍ଭକଣି, ଶାଶୁ, ନଣନ୍ଦ ତ ମୋର କେହି ନାହାନ୍ତି । ବାହା ହୋଇ ପଡ଼ଞ୍ଚୁ ପଡ଼ଞ୍ଚୁ ସବୁ ସମ୍ଭାଳିବାକୁ ହେଲା । ମରିବାକୁ ତର ନାହିଁ ସେଠି ।"

ଦୁଇ ସଖୀ ଗଲେ ପୋଖରୀ ହୁଡ଼ାକୁ । ଲବଣୀ ପ୍ରଗଲ୍‌ଭା, କିନ୍ତୁ ବୁଦ୍ଧିମତୀ । ନିଜର ସ୍ୱାମୀ ସନ୍ତାନ ସୁଖ କଥା କହିଲେ ଆମ୍ଭକଣି ମନରେ କଷ୍ଟ ହେବ ବୋଲି ତୁଳସୀ ଯେତେ ପଚାରିଲେ ବି ସେ ସେକଥା ଏଡ଼ି ଦେଇ ଅନ୍ୟ କଥା କହେ ।

ତୁଳସୀ ହସି କହିଲେ, "ଆମ୍ଭକଣି, ତୁ କଅଣ ଭାବୁଚୁ ତୋ ସୁଖ କଥା ଶୁଣି ମୋ ମନରେ କଷ୍ଟ ହେବ ?"

ଲବଣୀ ଅପ୍ରସ୍ତୁତ ହୋଇ କହିଲେ, "ନା ଲୋ ଆମ୍ଭକଣି, ସେ ଜଞ୍ଜାଳ କଥା କେତେ କହିବି । ଆଚ୍ଛା ଆମ୍ଭକଣି, ତୋତେ ଭଦ୍ରେ ଦେଲେ ପଦେ କଥା ବି ସେ କହି ନାହାନ୍ତି ?"

"ନା"

"ତୁ କେମିତି ସହିଚୁ ଲୋ ଆମ୍ଭକଣି, ମୁଁ ହୋଇଥିଲେ ତ..."

"କଅଣ କରି ଥାଆନ୍ତୁ ?"

"ଆଚ୍ଛା, ସେ ମାଇକିନିଆଟା ଅଛି, ନା ତାକୁ ଘୁଞ୍ଚାଇ ଦେଲେଣି, ଛି, ଛି ସାଇ ସାଆନ୍ତେ ଏମିତି ହେବେ, କିଏ ଜାଣିଥିଲା ।"

"ଆଉ କଅଣ କରନ୍ତେ ଯେ ସେ । ମୋର ତ ରୂପ ଦେଖୁଚୁ, ସେ କଅଣ ଏ ଯୁବା ବୟସରେ ତପସ୍ୟା କରନ୍ତେ । ପୁରୁଷଟି ସିଏ ।"

"ପୁରୁଷ ବୋଲି କଅଣ ସାତଖୁଣ ମାଫ୍ । ଯଦି ସେ ଏମିତି ହେଲେ···ମୁଁ ହୋଇଥିଲେ, ମୁଁ ବି···ମୋର ତ ଫେରି ସେ ଅଧିକାର ଅଛି···"

"ଛି, ଛି କଅଣ କହୁଚୁ ତୁ । ସେମାନେ ହେଲେ ପୁରୁଷ, ତାଙ୍କର ସେଥିରେ ଦୋଷ ନାହିଁ । ଆମେ ପରା ସ୍ତ୍ରୀ, ଆମେ ପରା ମାଜାତି, ଦଶ ମାସ ପିଲା ପେଟରେ ଧରିବୁ, ପିଲା ମଣିଷ କରିବୁ । ଏ ସଂସାର ଚଳାଇବାକୁ ଭଗବାନ ପରା ସଂସାରର ସବୁ ଦାୟିତ୍ୱ ଆମ ଉପରେ ଲଦି ଦେଇଚନ୍ତି । ଆମେ ଉଚ୍ଛୃଙ୍ଖଳ ହେଲେ ଏ ସଂସାର ଭୁଷୁଡ଼ି ପଡ଼ିବ ଯେ···"

"ଆମ୍ବକଷି, ତୁ ଏତେ ପାଠ ପଢ଼ିଚୁ । ଆଜି କାଲିକା ଯୁଗରେ ତୁ ଏକଥା କହୁଚୁ । ଆଜିକାଲି ନାରୀମାନେ ସ୍ୱାଧୀନ । ପୁରୁଷର ଅଧିକାର ସଙ୍ଗେ ଆମର ଅଧିକାର ସମାନ ।"

ତୁଳସୀ ହସି କହିଲେ, "ସ୍ୱାଧୀନ ଆମେ ଚିରଦିନ ଥିଲୁ । ମୁଁ ତ ଜାଣେ ପୁରୁଷମାନେ ପରାଧୀନ । ଆମର ସ୍ୱାମୀ ନ ହେଲେ ଚଳିଯିବ କିନ୍ତୁ ତାଙ୍କର ଆମେ ନ ଥିଲେ ଚଳିବ ନାହିଁ । ମୁଁ ତ ଦେଖୁଚି ସ୍ତ୍ରୀମାନେ ପୁରୁଷ ଉପରେ ଯେତେ ଅତ୍ୟାଚାର କରନ୍ତି, ପୁରୁଷମାନେ ସେତେ ଅତ୍ୟାଚାର କରନ୍ତି ନାହିଁ । ପୁରୁଷଙ୍କ ବାଡ଼ିଆଠା ଆଖିରେ ପଡ଼େ ସିନା କିନ୍ତୁ ତା ସତ୍ତ୍ୱେ ବି ତାଙ୍କୁ ଆମେ ବାନ୍ଧି ରଖିଥାଉ । ଗୋଟାଏ ବଣୁଆ ବାଘକୁ ବାନ୍ଧି ରଖିଲେ ସେ ଟିକିଏ କାମୁଡ଼ି ଦିଏ ନାହିଁ କି ? ଏ ଶକ୍ତି ଆମେ ଯେଉଁଦିନୁ ହରାଇଚୁ, ଯେଉଁଦିନୁ ଆମେ ପୁରୁଷମାନଙ୍କ ଭଳି ଉଚ୍ଛୃଙ୍ଖଳ ହେବାକୁ ଯାଇଚୁ, ସେହିଦିନୁ ସମାନ ଅଧିକାର, ସ୍ୱାଧୀନତା କଥା ଉଠିଚି । କିଲୋ, ଆମେ ଚାକର କରିବୁ କାହିଁକି ? ଆମେ ତ ରାଣୀ, ସେମାନେ ଆମ

ଗୃହକର ଖଟିବେ । ସେମାନେ ଭଲ ଗୃହକର କରୁଚନ୍ତି କି ନାହିଁ ଆମେ ନଜର ରଖିବୁ । ଆମେ ଯଦି ଯୁଦ୍ଧକୁ ଯିବୁ, ଗୃହକର କରିବୁ, ତେବେ ତ ସଂସାର ଛାରଖାର ହୋଇଯିବ ।

"ଏତେ କଥା ତ କହୁଚ, ସାଆନ୍ତେ ତେବେ ଏମିତି ହେଲେ କାହିଁକି ?"

"ସେଇଟା ମୋ ଦୋଷରୁ, ମୋ କପାଳ ଦୋଷରୁ । ପ୍ରେମ ଖାଲି ମନରେ ଥିଲେ ହୁଏ ନା । ପୁରୁଷଙ୍କ ନିକଟରେ ବାଗେଇ ବୁଗେଇ ତାକୁ ପ୍ରକାଶ କରିବାକୁ ହୁଏ, ନାନା ଉପାୟରେ । ମୁଁ ତାହା କରି ନାହିଁ, କରି ପାରୁନାହିଁ ।"

"ପୁରୁଷେ ଗୁହାଳ୍ର ଖାଲି ବାହାର ରୂପଟା । ମନ ତାଙ୍କ ପାଖରେ କିଛି ନୁହଁ । ନ ହେଲେ ଯିଏ ସମସ୍ତଙ୍କୁ ଖାଇବାକୁ ଦେଇ ନିଜ ଭାତ ବାଢ଼ି ରଖି ଦେଇଥାଏ କାଳେ କିଏ ଭିକାରୀଟାଏ ମାଗି-ଦେବ ବୋଲି, ବେଳବୁଡ଼ାକୁ ଯାଇ ଖାଏ, ତା ମନ କଥା କିଏ ବୁଝିଲା, ଶାଶୁ ନା ସ୍ୱାମୀ ? ପୁରୁଷମାନେ ଭାରି ବଦମାସ୍ । ଖାଲି ରୂପ ଖୋଜି ବୁଲୁ ଥାଆନ୍ତି । ଯେଉଁଠି ଦେଖନ୍ତି ସେଠି ମାଛି ଭଳିଆ ଲାଗି ଯାଆନ୍ତି ।"

"ଆମ୍ଭକଥି, ଏ ଦେହ ଭିତରେ ମନ ଅଛି । କିଏ ଜଣେ ବଡ଼ ଇଂରେଜ ଲେଖକ ଲେଖିଛନ୍ତି ଯେ ନାରୀ ଦୋମହଲା କୋଠା । ଉପର ମହଲାକୁ ଯିବାକୁ ହେଲେ ତଳ ମହଲା ଦେଇ ଯିବାକୁ ହେବ । ଏ ତ ଭଗବାନଙ୍କ ନିୟମ । ଭଗବାନ ପୁରୁଷଙ୍କୁ ବାରବୁଲା କରି ଆମକୁ କରିଛନ୍ତି ଅନ୍ନପୂର୍ଣ୍ଣା । ଆମେ ବାରବୁଲା ହେଲେ ପୃଥିବୀ ଛାରଖାର ହୋଇଯିବ ଯେ !"

"ତୁ କଅଣ ତେବେ ତାଙ୍କ ବାରବୁଲା ଚଖାପଣକୁ ଭଲ କହୁଚୁ ?"

"ନା, ଯେଉଁ ପୁରୁଷ ବହୁ ସ୍ତ୍ରୀ ପାଲରେ ପଡ଼େ, ସେ ଲମ୍ପଟ ହୋଇଯାଏ, ସବୁ ଭଲ ତାର ମରିଯାଏ । ତେଣୁ ଆମର ମୁନିମାନେ ଏକ ନିବାନ୍ଧ ଆଦେଶ ଦେଇଛନ୍ତି, ଆମେ ଏକେଶ୍ୱରୀ । ସ୍ତ୍ରୀର କର୍ତ୍ତବ୍ୟ—ଛଳେ ବଳେ କୌଶଳେ ସ୍ୱାମୀକୁ ବଶୀଭୂତ କରିବାକୁ ହେବ । ତାହେଲେ ଯାଇ ପୁରୁଷ ଏ ସଂସାରରେ କର୍ତ୍ତବ୍ୟ କରି ପାରିବ, ନ ହେଲେ ବାରବୁଲା ହୋଇ ବୁଲୁଥିବ ।"

"ତେବେ ଏ ରୂପ ତୁ ଏମିତି କରି ରଖିଚୁ କାହିଁକି ? ଟିକିଏ ସାଜସୁଜ ରହ ।" ତୁଳସୀ ହସିଲେ । ଲବଣୀ କହିଲେ "ନା ମୁଁ ତୋତେ ଧନେ ସଜେଇ ସୁଜେଇ ଦେବି । ଦେଖିବୁ ଫେର ମୋର କାହାଦୁରୀ ।"

ଖଞ୍ଜାପଟୁ ପାଟି ଶୁଭିଲା "କଲେ ବୋହୂ, ଗଲୁଣି କି ଲୋ ?"

ତୁଳସୀ ତରତର ହୋଇ ଉଠି କହିଲେ "ଗୃଲ୍ ଆମ୍ବକଷି, ମା'ଙ୍କ ପୂଜା ହୋଇଗଲାଣି ।"

ଲବଣୀ ଅନ୍ୟମନସ୍କ ଭାବରେ କହିଲେ "ଠିକ୍ ଠିକ୍ ହେଉଚି" ।

"କଅଣ ଠିକ୍ ? କଅଣ ହେଉଚି ?"

"କିଛି ନାହିଁ, ଗୃଲ୍ ।"

—କଠ୍—

ପରଦିନ । ଲବଣୀଙ୍କ ଘରେ ଜଣେ କେଳୁଣି ପସରା ରଖି ବସିଚି ।

କେଳୁଣି କହୁଚି "ମା, ସାତଖଣ୍ଡ ହଳଦୀ ଆଣ, ଟିକିଏ ସିନ୍ଦୂର ଆଣ ।"

ଲବଣୀ ଆଣି ସବୁ ଦେଲେ । କେଜୁଣି ସାଢଖଣ୍ଡ ହଳଦୀକୁ ଆଖି ସାମନାରେ ଧରି କଅଣ ବଡ ବଡ଼ ହୋଇ କହିଲା । ତା ପରେ ପସଇରୁ କଅଣ ବାହାର କରି ସିନ୍ଦୂର ସାଥିରେ ମିଶାଇ ଗୋଳିଦେଇ କହିଲା "ସକାଳୁ ଏ ହଳଦୀ ମାଖି ଗାଧୋଇବେ । ଗାଧୋଇ ସାରି ଏଇ ସିନ୍ଦୂର ମୁଣ୍ଡରେ ପିନ୍ଧିବେ । ଏମିତି ପିନ୍ଧିବେ ଯେ ସ୍ୱାମୀଙ୍କ ନଜର ପଡ଼ିବ । ବାସ୍, ତା ପରେ ଦେଖିବ ।"

କେଜୁଣି ଚାଲିଗଲା । ଲବଣୀଙ୍କ ଆଖି ଆନନ୍ଦରେ ଉଦ୍ଭାସିତ ହୋଇଲା ।

କିଛିଦିନ ପରେ ଗାଧୋଇବା ବେଳ ।

ଆଜ ସକାଳେ ଲବଣୀ ଆସି କହିଲେ "ଆମ୍ଭକଷି ଆଜ କଣ ଗାଧୋଇ ଯିବୁ ନାହିଁ କି ? ଚାଲ, ଆଜ ହଳଦୀ ମାଖି ପୋଖରୀରେ ଗାଧୋଇବା ।"

ଦୁଇ ସଖି ଗଲେ ପୋଖରୀକୁ ଗାଧୋଇବାକୁ । ଲବଣୀ ସେଇ ହଳଦୀ ତୁଳସୀ ଦେହରେ ମଖାଇଦେଇ ଗାଧୋଇବାକୁ ଲାଗିଲେ ।

ସେଇଦିନ ଖରାବେଳେ । ଲବଣୀ କାର୍ଯ୍ୟଉପଲକ୍ଷରେ ଭୂପେନ୍ଦ୍ରଙ୍କ କଚେରି ଘରକୁ ଆସିଚନ୍ତି, ସାଜିସୁଜି ସେ ଆସିଚନ୍ତି । ଭୂପେନ୍ଦ୍ର ତାଙ୍କ ରୂପ ଦେଖି ମୁଗ୍ଧ ଭାବରେ ଅନାଇଁ ରହିଚନ୍ତି ।

"ଭାଇ ସାଆନ୍ତେ ଏମିତି କଅଣ ଅନାଇ ଦେଖୁଚନ୍ତି..."

"ତୁମକୁ ଲବଣୀ, କି ସୁନ୍ଦର ତୁମେ..."

ଏ ଗୁଣ ଏ ପର୍ଯ୍ୟନ୍ତ ଯାଇନାହିଁ । ଦୁନିଆସାରା ସ୍ତ୍ରୀ ଲୋକଙ୍କୁ ଖାଲି ଏମିତି ଆଖିରେ ଦେଖୁଥିବ । ତେବେ ଆଉ କରିବ କଅଣ ତୁମେ । ଖାଲି ଏଇଆ କରି ଦିନେ ମରିଯିବ ସିନା । କେତେ ଲୋକ

ଏମିତି ମଲେଣି । କଅଣ ଲାଭ ଅଛି ସେଥିରେ ! ନିଜ ସ୍ତ୍ରୀକୁ ଟିକିଏ ବୁଝିଁ, ଦେଖ ତା ମନକୁ ।"

ଭୂପେନ୍ଦ୍ର ଲଜ୍ଜାରେ ତଳକୁ ମୁହଁ ପୋତିଲେ ।

—କଟ୍—

ସେଇଦିନ ସନ୍ଧ୍ୟାବେଳେ । ଲବଣୀ ତୁଳସୀକୁ ଆଜି ସଜାଇ ମୁଣ୍ଡରେ ସିନ୍ଦୂରଟୋପା ଦେଇ ଥରେ ଅନାଇ ଦୀର୍ଘନିଃଶ୍ୱାସ ପକାଇ କହିଲେ, "ଆମ୍ବକଷି, ତୋତେ ମୋ ରାଣ, ଆଜି ଯେମିତି ହେଲେ ଥରେ ତୁ ତାକୁ ଭଲ କରି ଦେଖାଦେବୁ ।"

ତୁଳସୀ ହସି କହିଲେ, "ହଉ"

ଲବଣୀ ଘରକୁ ଯାଇ ତୁଳସୀମଣ୍ଡଳମୂଳେ ଭଗବାନଙ୍କର ପ୍ରାର୍ଥନା କରିବାରେ ଲାଗିଲେ ।

× × ×

ଭୂପେନ୍ଦ୍ର ବସି ଭାବୁଚନ୍ତି···

ଛି, ଛି, ଏ ଜୀବନଟାକୁ ମୁଁ କଅଣ କଲି ! ଖାଲି ପ୍ରେମ କରି ବାହା ହୋଇ ପାରିଲି ନାହିଁ ବୋଲି ସିନା ମୋର ଜୀବନ ବିଫଳ ବୋଲି ଭାବିଲି । ଯୌବନର କ୍ଷଣିକ ମୋହରେ ପଡ଼ି ମୁଁ କେତେ ତଳକୁ ଗଲିଯାଇଚି । ଖାଲି ଲାଳସା ବହ୍ନିରେ ପଡ଼ି ଜଳି ଯାଉଚି । ମଣିଷକୁ ଯଦି ତାର ପ୍ରକୃତି ଖେଳାଇ ବୁଲାଇଲା ତେବେ ମନୁଷ୍ୟ ପ୍ରକୃତି ଦମନ କରିବ ବୋଲି କାହିଁକି ଗର୍ବ କରେ ! ଆକାଶରେ ଉଡ଼ାଜାହାଜ ଉଡ଼ାଇ ଏ ଗର୍ବ ! ହାଇଡ୍ରୋଜେନ୍ ବୋମା ତିଆରି କରି ଏ ଗର୍ବ ! କିନ୍ତୁ ନିଜ ପ୍ରବୃତ୍ତିକୁ ଲଗାମଛଡ଼ା କରିଦେବାରୁ ଏସବୁ ତ ତାକୁ ଧ୍ୱଂସ ଆଡ଼କୁ ଟାଣି ନେଉଚି । ସତ୍ୟ, ଶିବ, ସୁନ୍ଦର ତେବେ କଅଣ ? ମନୁଷ୍ୟ ତେବେ ମନ୍ଦ ବୁଦ୍ଧି କାହିଁକି ପାଇଚି ?

ଭୂପେନ୍ଦ୍ରଙ୍କ ଆଖି ଛଳ ଛଳ ହୋଇଗଲା ।

ଗୃକର କହିଲା, "ସାଆନ୍ତେ, ଠା ହେଲାଣି ।"

× × ×

ଭୂପେନ୍ଦ୍ର ଜଳଖିଆ ଖାଇସାରି ମୁହଁ ଧୋଇବାକୁ ଗଲେ ।

ଖମାରଘର କୋଣ ଅନ୍ଧାରରେ ଚିରଦିନ ପରି ଆଜି ମଧ୍ୟ ସେହିପରି ଗୋଟିଏ ଦୀର୍ଘନିଃଶ୍ୱାସ ଶୁଭିଲା । ଭୂପେନ୍ଦ୍ର ଛୁଡ଼ା ହୋଇଗଲେ । ତୁଳସୀ ତାଙ୍କର କୁଞ୍ଚ ଧରି ଟିକିଏ ଟାଣି ଦେଲେ ।

ଭୂପେନ୍ଦ୍ର କିଛି ନ କହି ମୁହଁ ହାତ ଧୋଇ ଖଞ୍ଜା ଭିତରକୁ ଆସି କହିଲେ, "ବୋଉ, ମୋ ଦେହଟା ଆଜି ଭଲ ଲାଗୁ ନାହିଁ । ମୁଁ ଆଜି ପରେ ଖାଇବି ।"

ମା, କିଛି ବୁଝି ପାରିଲେ ନାହିଁ । ଅବାକ୍ ହୋଇ ଗୃହିଁ ରହିଲେ ।

ଭୂପେନ୍ଦ୍ର ଯାଇ ଖଟ ଉପରେ ଶୋଇ ପଡ଼ିଲେ ।

ମା ବୋହୂକୁ ପାଟି କରି କହିଲେ—

"କଲେ ବୋହୂ, ଭୂପ ଦେହ ଖରାପ । ଜଲଦି ଖିଆପିଆ କରିନିଅ । ଯା ଯା ବେଇଗି ଯା"

ତୁଳସୀ ଖାଇସାରି ଦେଖିଲେ ଶୋଇବା ଘର ଦୁଆର ମେଲା ରହିଚି । ଆହ୍ୱାନର ଏ ସଙ୍କେତ ସେ ବୁଝିଲେ । ଧୀର ପଦକ୍ଷେପରେ ସେ ଘରେ ପ୍ରବେଶ କରି ଖଟ ଉପରେ ବସିଲେ ।

ଭୂପେନ୍ଦ୍ର ଖଟରୁ ଉଠିପଡ଼ି ତୁଳସୀଙ୍କ କୋଳରେ ମୁହଁ ପୋତି କାନ୍ଦି ପକାଇ କହିଲେ, "ମୋତେ ତୁମେ କ୍ଷମାକର, ମୋତେ କ୍ଷମାକର, ନ ହେଲେ ମୋର ମୁକ୍ତି ନାହିଁ ।

ତୁଳସୀ ଭୂପେନ୍ଦ୍ରଙ୍କୁ ଉଠାଇ ତାଙ୍କ ମୁହଁକୁ ଗୃହିଁ ରହିଲେ । ଆଖିରୁ ତାଙ୍କର ଲୁହ ଝରି ପଡ଼ୁଥିଲା—

କ୍ଲୋଜ୍ ଅପ୍

# କସ୍ତେ ପୁତ୍ରଃ

ବଜାରରୁ ଦୁଇପଇସାର ଶାଗ କିଣିବାଠାରୁ ଆରମ୍ଭ କରି ରାଜ୍ୟଗୋଷ୍ଠୀ ପର୍ଯ୍ୟନ୍ତ ସବୁଠି ସଂଗ୍ରାମ । ପ୍ରତ୍ୟେକେ ଜୀବନ ପାଇଁ ସଂଗ୍ରାମ କରୁଛନ୍ତି । କିନ୍ତୁ ଗୋଟାଏ ଗୋଟାଏ ଲୋକ ଥାଆନ୍ତି, ଜୀବନ ଯେଉଁମାନଙ୍କ ପକ୍ଷରେ ଗୋଟାଏ ପରିହାସ । ସଂଗ୍ରାମକୁ ଏମାନେ ଏଡାଇ ଯାଆନ୍ତି । ମାରିବାକୁ ଆସିଲେ କୁହନ୍ତି, ମାରନା ମୁଁ ମଲିଣି । ଆମ କାହ୍ନୁବାବୁ ଏଇ ଧରଣର ଲୋକ । ଆମ କଚେରୀରେ କାହ୍ନୁବାବୁ ଆବାଳବୃଦ୍ଧ ସମସ୍ତଙ୍କର ଅଜା । ଯିଏ ଆଜି ବି ଚାକିରୀରେ ଯୋଗ ଦେଇଚି, ଅଳ୍ପ ସମୟ ଭିତରେ ସେ କାହ୍ନୁବାବୁଙ୍କର ନାତି ହୋଇପଡେ । ଥଟ୍ଟା ପରିହାସ କରେ, କାହ୍ନୁବାବୁ ଚୌକି ଛାଡି ଉଠିଗଲେ ତାଙ୍କର କଣ୍ଠୁ ଧରି ଟାଣି ଦିଏ କିମ୍ବା ତାଙ୍କ ପିଠିରେ 'ଗଧ' ଲେଖି ଦିଏ । କାହ୍ନୁବାବୁ ସେଥିରେ କ୍ଷୁଣ୍ଣ ନ ହୋଇ ଆମୋଦ ପାଆନ୍ତି । ତାଙ୍କ ପ୍ରତି କାହାରି ଆକ୍ରୋଶ ନ ଥାଏ । କାରଣ ସେ ନିଜର ଦକ୍ଷତା ଦେଖାଇ କାହାରି ପଦୋନ୍ନତି ପଥରେ କଣ୍ଟକ ନୁହନ୍ତି । ଚାକିରୀ ତାଙ୍କର ପ୍ରାୟ ତିରିଶ ବର୍ଷରି ହେଲାଣି, କିନ୍ତୁ ସେ ଯେଉଁଠି ପ୍ରଥମେ ଆରମ୍ଭ କରିଥିଲେ ଆଜି ବି ସେଇଠି । ତାଙ୍କର କର୍ତ୍ତବ୍ୟ ପ୍ରତି ଅବହେଳା ଓ ଅପାରଗତା ଯୋଗୁଁ କେତେଥର ବାର୍ଷିକ ଦରମା ବୃଦ୍ଧି ବନ୍ଦ ରଖା ହୋଇଚି, କେତେଥର ସେ ସସ୍‌ପେଣ୍ଡ ହୋଇଛନ୍ତି, ରୋଜ କେତେ

ଗାଳି ଖାଆନ୍ତି, ତଥାପି ସେ ସେଇ ଦରପୋଡ଼ା କାଠ । ନିଜର ଆର୍ଥିକ ଅବସ୍ଥା ଉନ୍ନତ କରିବାରେ କୌଣସି ଚେଷ୍ଟା ନାହିଁ । କୌଣସି ମତେ ସେ ଅଶିଟି ଟଙ୍କାରେ ଚଳାଇ ନିଅନ୍ତି । ସଂସାର ଭିତରେ ସ୍ତ୍ରୀ ଓ ଗୋଟିଏ ପୁଅ । ସ୍ତ୍ରୀଙ୍କୁ ପାଖରେ ରଖିବାର କ୍ଷମତା ତାଙ୍କର କଦାପି ହୋଇନାହିଁ । ପୁଅଟି ପାଖରେ ରହି ପାଠ ପଢେ, ଏ ବର୍ଷ ମ୍ୟାଟ୍ରିକ ପାସ୍ କରିଛି । ତାକୁ ନିଜ କାମରେ ମୁତଏନ କରି ପାରିଲେ ସେ ଚାକିରିରୁ ଅବସର ନେବେ, ଏହା ତାଙ୍କର ଆଶା ।

ଚାକିରି କରିବାକୁ ସେ ଗଳାବନ୍ଦ କୋଟ ଓ ତାହା ଉପରେ ଖଣ୍ଡେ ଅଧମଇଳା ଚାଦର ପିନ୍ଧି ଝୁଲି ଝୁଲି ଆସନ୍ତି । ଘରୁ ବାହାରି ଜୁହାର ହେଉ ହେଉ ତାଙ୍କର ଚାଲିଯାଏ ଅଧଘଣ୍ଟାଏ । ତାପରେ ରାସ୍ତାରେ ଯେତେ ମନ୍ଦିରସ୍ଥ ବା ତରୁତଳସ୍ଥ ଦେବଦେବୀ ଅଛନ୍ତି ପ୍ରତ୍ୟେକଙ୍କୁ ଜୁହାର କରିବାରେ ଅନ୍ତତଃ ଦଶମିନଟ ଲେଖାଏ ଚାଲିଯାଏ । କଚେରିରେ ପହଞ୍ଚିବା ବେଳକୁ ହୋଇଯାଏ ଦଶ ବାରଟା । ଇତି ମଧ୍ୟରେ ହାକିମଙ୍କର ଦୁଇ ତିନଥର ଡାକରା ସରି ଯାଇଥାଏ । କଚେରିରେ ପହଞ୍ଚି ଗୋଟାଏ ଦୀର୍ଘଶ୍ୱାସ ପକାଇ ଚୌକିରେ ବସିବା ବେଳକୁ ସାମନାରେ ଟେବୁଲ ଉପରେ ନାଲି ପେନ୍ସିଲରେ ଲେଖା ଗୋଟିଏ କାଗଜ ଦୃଷ୍ଟି ଆକର୍ଷଣ କରେ । ସେ ଖଣ୍ଡିକ ହେଡ୍କିରାଣିଙ୍କ ଆଦେଶ ପତ୍ର, କାହ୍ନୁବାବୁ ପହଞ୍ଚିବା ମାତ୍ରେ ସାହେବଙ୍କୁ ଦେଖା କରିବେ । ଏହା ନିତ୍ୟନୈମିତ୍ତିକ ବ୍ୟାପାର । କାହ୍ନୁବାବୁ ସେ ଖଣ୍ଡିକ ଦେଖି ନ ଦେଖିଲା ପରି ଚାଦରରେ ମୁଣ୍ଡ ଝାଳ ପୋଛି, ଚାଦର ସଞ୍ଚାଳନ କରି ଟିକିଏ ବିଞ୍ଚି ହଉ ହଉ ଢୋଳାଇ ପଡନ୍ତି । ହାକିମଙ୍କ ଚପରାସି ବା ହେଡକିରାଣି

ନିଜେ ଆସି ତାଙ୍କୁ ଉଠାଇ ଦେଇ କୁହନ୍ତି, ଯାଆନ୍ତୁ ସାହେବ ସଲାମ ଦେଇଛନ୍ତି ।

କାହ୍ନୁବାବୁ ଆଉ ଗୋଟିଏ ଦୀର୍ଘଶ୍ୱାସ ପକାଇ ପାଟିରୁ ପାନ ବାହାର କରି ପକାଇ ଦେଇ କୋଟଟା ଟିକିଏ ସଜାଡ଼ି ନେଇ ଧୀରେ ଧୀରେ ଉଠିଯାଆନ୍ତି ସାହେବଙ୍କ ଦପ୍ତରକୁ । ସେଠି ପ୍ରାୟ ଅଧଘଣ୍ଟାଏ ଧରି ଗାଳିମିଶ୍ରିତ ଆଶ୍ୱାସ ଓ ଉପଦେଶ ବାଣୀ ନିର୍ବିକାର ଚିତ୍ତରେ ମୁଣ୍ଡପୋତି ଛିଡ଼ା ହୋଇ ଶୁଣି ଅନେକଗୁଡ଼ିଏ କାମ କରିବାର ତାଲିକା ଧରି ଫେରି ସିଧା ଚାଲି ଯାଆନ୍ତି ରେକର୍ଡ ଘରକୁ । ରେକର୍ଡ ଘରଟି ଅନ୍ଧାରୁଆ । ସେ ଘରକୁ ପ୍ରାୟ କେହି ଯାଆନ୍ତି ନାହିଁ । ଖୁବ୍ ଉଚ୍ଚ ଘର, ବଡ ବଡ଼ ଥାକରେ ଭର୍ତ୍ତି । ସବୁ ରେକର୍ଡ଼ ଏହି ଘରେ ଥାଏ । ସବା ପଛ ଥାକଟିରେ କେତେଗୁଡ଼ିଏ ରେକର୍ଡ ଘୁଞ୍ଚାଇ ଗୋଟିଏ ମଣିଷ ଶୋଇବା ଭଳି ଗୋଟିଏ ସ୍ଥାନ ହୋଇଚି । ତା ଉପରେ ପଡ଼ିଚି ଖଣ୍ଡିଏ ଚିରା ମଶିଣା । କେତେ-ଗୁଡ଼ିଏ ମୋଟା ଖାତା ସ୍ତୁପାକାର କରି ତକିଆ ଭଳି ରଖା ହୋଇଚି । କାହ୍ନୁବାବୁ ସାହେବଙ୍କ ପାଖରୁ ଗାଳି ଖାଇ ଆସିବା ପରେ ସେ-ଗୁଡ଼ିକ ହଜମ କରିବା ପାଇଁ ସେଇଠି ଶୋଇ ପଡନ୍ତି । ତାଙ୍କର ଏ ଗୁପ୍ତ ଶୟନ ଶିବିର ତାଙ୍କର କେତେଜଣ ବିଶ୍ୱାସୀ ନାତି ଛଡ଼ା ଆଉ କେହି ଜାଣନ୍ତି ନାହିଁ । ଇତି ମଧ୍ୟରେ ଗୁରିଆଡ଼େ ତାଙ୍କୁ ଖୋଜା ଚାଲିଥାଏ । ତାଙ୍କର କେଉଁ ନାତି କୁହେ, ସେ ଯାଇଛନ୍ତି ଅମୁକ ଅଫିସକୁ କଅଣ କାମରେ; କିଏ କୁହେ ଯାଇଛନ୍ତି ତମୁକ୍ ଅଫିସକୁ କଣ ନଥି ଆଣିବା ପାଇଁ, ହେଡ଼କିରାଣି ବାବୁ ଚଷମା ଉପର ବାଟେ କିଛିକ୍ଷଣ କାହ୍ନୁବାବୁଙ୍କ ଖାଲି ଚୌକିକୁ ବଡ ବଡ ଆଖିରେ ଅନାଇ ଟେବୁଲ ଗୋଡରେ ସୁତାରେ ବନ୍ଧା ହୋଇଥିବା ପୁଳାଏ କାଗଜରୁ ଖଣ୍ଡେ ଟାଣି ଆଣି ଖଗରେ ଗୁଡ଼ାଏ କଅଣ ଲେଖି ପକାଇ ଡାକନ୍ତି ଚପରାସିକୁ ।

—ଆଇଜ୍ଞା !

—ଯାଓ, ସାହେବଙ୍କୁ ଏଖଣ୍ଡ ଦେଇ ଆସ, ଯାଆଓ ।

ବୁଢ଼ା ଚପରାସୀ ଧନୁର ଡ଼ୋଳାଇବାରେ ବ୍ୟାଘାତ ପଡ଼େ । ସେ କାହ୍ନୁବାବୁଙ୍କର ଭଲ ବନ୍ଧୁ । ଦୁହେଁ ଗୋଟିଏ ଗୃହଳଘରେ ପାଞ୍ଚ ଟଙ୍କା ଭଡ଼ାରେ ରହନ୍ତି । ଗୃହକର୍ମ କଲାଦିନ ଠାରୁ ଦୁହେଁ କେବେହେଁ ସ୍ତ୍ରୀ ପୁତ୍ର ସହ କଟକରେ ରହି ନାହାନ୍ତି କମ୍ବା ଛୁଟି ନେଇ କେବେହେଁ ଘରକୁ ଯାଇ ନାହାନ୍ତି । ବର୍ଷକୁ ଥରେ ମାତ୍ର ପୂଜା ଛୁଟିରେ ଯଦି ଯିବାକୁ ଅନୁମତି ମିଳେ ତେବେ ଯାଆନ୍ତି । ଗାଁ ତାଙ୍କର କଟକଠାରୁ ବହୁ ଦୂରରେ, ଯିବା ଆସିବା ପାଇଁ ଅନ୍ତତଃ ପନ୍ଦରଟି ଟଙ୍କା ଆବଶ୍ୟକ ହୋଇ ପଡ଼େ । ଏତେ ଟଙ୍କା କେବେହେଁ ଏକା ସାଙ୍ଗରେ ଜୁଟେ ନାହିଁ, ଜୁଟିଲେ ମଧ୍ୟ ଛୁଟି ମିଳିବା ତାଠାରୁ ଦୁଃସାଧ୍ୟ ହୋଇ ପଡ଼େ; ଅଗତ୍ୟା ମୁହଁମାଡ଼ି ସେମାନେ କଟକରେ ପଡ଼ିଥାଆନ୍ତି ସେଇ ଗୋଟିଏ ଅଣଓସାରିଆ ସନ୍ତସନ୍ତିଆ କୁଡ଼ିଆଟିରେ ।

ଏଇ ହେଲା କାହ୍ନୁବାବୁଙ୍କର ନିତ୍ୟନୈମିତ୍ତିକ ଜୀବନ । ଏହାର ବ୍ୟତିକ୍ରମ କଦାପି ହୋଇ ନାହିଁ । ଥରେ ଅତ୍ୟନ୍ତ ବିରକ୍ତ ହୋଇ ହାକିମ ତାଙ୍କୁ ବୁଝାଇ ବାଟକୁ ଆଣିବାକୁ ଚେଷ୍ଟା କରି କହିଥିଲେ, ଦେଖନ୍ତୁ କାହ୍ନୁବାବୁ, ସମୟ ଥିଲା, ଯେତେବେଳେ ଇଂରେଜ ଶାସନ ଚାଲିଥିଲା, ସେତେବେଳେ ହୁଏତ ଆପଣଙ୍କ କର୍ତ୍ତବ୍ୟ ପ୍ରତି ଅବହେଳା କ୍ଷମଣୀୟ ଥିଲା । କିନ୍ତୁ ଦେଶ ବର୍ତ୍ତମାନ ସ୍ୱାଧୀନ ହୋଇଛି । ଆମେ ଯଦି ଏତେବେଳେ କାମରେ ଫାଙ୍କି ଦେଉଁ ତେବେ ଆମେଇ ମରିବା, ଏଟା କଅଣ ବୁଝିପାରୁ ନାହାନ୍ତି ! କାହ୍ନୁବାବୁ ନିରବରେ ଛିଡ଼ା ହୋଇ ରହିଲେ । ତାଙ୍କର ଏହାହିଁ ସ୍ୱଭାବ, ଯେତେ ଗାଳି ଦିଅ ବା ଯେତେ ଉପଦେଶ ଦିଅ ବା ଯେତେ

ପ୍ରଶ୍ନ ପତ୍ରର ସବୁଥିରେ ସେ ନୀରବ । ହାକିମ ତାଙ୍କର ନୀରବତାରେ ଆହୁରି ରାଗିଯାଇ ଟେବୁଲ ଉପରେ କଲମ କଚାଡ଼ି କହିଲେ, ଏ କଅଣ ଢଙ୍ଗ ଆପଣଙ୍କର ? ପଚାରିଲେ ଉତ୍ତର ଦିଅନ୍ତି ନାହିଁ କାହିଁକି ? ହାକିମଙ୍କ ଆଡ଼କୁ ଟିକିଏ କଣେଇ ଚାହିଁ କାହ୍ନୁବାବୁ କହିଲେ, ଆଜ୍ଞା, ବୁଝୁନାହିଁ କି, ସବୁ ବୁଝୁଚି । କିନ୍ତୁ କାମକୁ ତ ମୋଟେ ଇଚ୍ଛା ହେଉନାହିଁ; କଣ କରିବି ।

—କାହିଁକି ?

—ମୁଁ କାମକଲେ ଦେଶର ଉନ୍ନତି ହେବ, ଦେଶର ଉନ୍ନତି ହେଲେ ଆମର ହେବ ଏ କଥା ମୁଁ ବୁଝୁଚି; କିନ୍ତୁ ସାର୍, ମୋର ଜୀବନଟା ଗଲା ଟିକିଏ ସାମାନ୍ୟ ସୁଖ କରି ପାରିଲି ନାହିଁ । ଦିନକ ପାଇଁ ପିଲାପିଲି ପାଖରେ ରହି ଆନନ୍ଦ ପାଇ ପାରିଲି ନାହିଁ......

ହାକିମ ନୀରବ ରହିଲେ । କିଛିକ୍ଷଣ ପରେ କହିଲେ, ହଉ ଯାଆନ୍ତୁ । ପେନ୍‌ସନ୍ କେବେ ନେବେ ?

—ଆଉ ଅଳ୍ପଦିନ ଅଛି ସାର୍ । ପୁଅ ଏଇ କଚେରିରେ ରହିବା ପାଇଁ ଖଣ୍ଡେ ଦରଖାସ୍ତ କରିଚି । ଦୟାକରି ଯଦି ଆପଣ ତାକୁ କାମରେ ଲଗାଇ ଦିଅନ୍ତେ ତେବେ ପେନ୍‌ସନ୍ ନେଇ ମୁଁ ଚାଲିଯାଆନ୍ତି ।

—ହଉ ଯାଆନ୍ତୁ ।

ହାକିମଙ୍କ ପିତା କିରାଣୀ ଥିଲେ । ସେ କି କଷ୍ଟରେ ତାଙ୍କୁ ଓ ତାଙ୍କର ଭାଇମାନଙ୍କୁ ପାଠ ପଢ଼ାଇ ମଣିଷ କରିଛନ୍ତି ସେ ଜାଣନ୍ତି ।

କାହ୍ନୁବାବୁଙ୍କ ପୁଅ ଅଜୟ ଚାକିରି ପାଇ ରହିଲେ । କିନ୍ତୁ କାହ୍ନୁବାବୁ ଆଉ କିଛିଦିନ ଚାକିରିରେ ରହିବାପାଇଁ ପୁଣି ଦରଖାସ୍ତ କଲେ । ହେଡ଼ କିରାଣୀ ସେ ଦରଖାସ୍ତ ଉପରେ କାହ୍ନୁବାବୁଙ୍କ

ବିପକ୍ଷରେ ଉଡ଼ାଏ ଲେଖି ମତ ଦେଲେ ଯେ କାହ୍ନୁ ବାବୁଙ୍କ ଭଳି ଅକର୍ମଣ୍ୟଙ୍କୁ ଚାକିରିରେ ଆଉ ରଖିବା ଅନ୍ୟାୟ ହେବ ।

ହାକିମ ଦରଖାସ୍ତ ପଢ଼ି ଆଶ୍ଚର୍ଯ୍ୟ ହୋଇ କାହ୍ନୁ ବାବୁଙ୍କୁ ଡ଼କାଇଲେ । ବୁଢ଼ା ଚପରାସି ଧନୁ ଡକାଇବାର କାରଣ ବୁଝିପାରି କାହ୍ନୁ ବାବୁଙ୍କୁ ତାଙ୍କର ଶିବିରରୁ ଉଠାଇ ସାହେବଙ୍କ ପାଖକୁ ପଠାଇଲେ । କାହ୍ନୁ ବାବୁ ତରବର ହୋଇ ମୁହଁ ଧୋଇ ସାହେବଙ୍କ ପାଖରେ ହାଜର ହୋଇ ଛିଡ଼ା ହେଲେ ।

—କି କାହ୍ନୁ ବାବୁ, ଇଏ କଅଣ ? ଏ ଦରଖାସ୍ତ କଅଣ !

କାହ୍ନୁ ବାବୁ ନିରବ ।

—ଆପଣ ପରା କହୁଥିଲେ ଯେ ପୁଅ ଚାକିରି କଲେ ଅବସର ନେବେ । ଫେର ଏ କଅଣ !

—ଆଜ୍ଞା, ତା ତ ଭାବିଥିଲି । କିନ୍ତୁ ମନ ବଳିଲା ନାହିଁ ।

—ନା, ନା, ଆପଣଙ୍କ ବୟସ ଅନେକ ହେଲାଣି, ଚାକିରି ବି ଚାଳିଶ ବର୍ଷରୁ ବେଶି ହେଲାଣି, ଏଥର ଘରେ ବସି ଧର୍ମ କର୍ମରେ ମନ ଦିଅନ୍ତୁ । ପୁଅ ତ ଚାକିରି ପାଇଲା, ଏଥର ପୁଅକୁ ବାହାଦେଇ ଆନନ୍ଦରେ ବୋହୂ ନେଇ ଘରେ ରହନ୍ତୁ, ଆଉ ଲୋଭ କାହିଁକି ?

—ଆଜ୍ଞା, ଏ ଲୋଭ ନୁହେଁ, ଅବସର ନେଲେ ଅଳ୍ପ କେଇଟା ଦିନରେ ମରିଯିବି, ଘରେତ ଜମି ବାଡି ନାହିଁ ଯେ ଚାଷବାସ କରି କାଳ କଟିଯିବ, କଅଣ କରିବି ?

—କାହିଁକି, ଏତେ ଦିନ ଏକା ଏକା କାଳ କଟାଇଲେ, ଏଥର...

—ଆଜ୍ଞା, ଯେଉଁ ବୟସରେ ତା ହବାର କଥା ତ ହେଲା ନାହିଁ । ଆଉ ଏ ବୟସରେ...ସାର୍, ସତ କହୁଚି, ବିବାହ କରିବି ସତ...କିନ୍ତୁ କିନ୍ତୁ...

—କଅଣ କନ୍ତୁ ।

—ସାର୍ ଏତେଦିନ ଅଲଗା ଏକା ଏକା ରହି ରହି ଏ ଜୀବନଟା ଅଭ୍ୟାସରେ ପଡ଼ି ଗଲାଣି । ସ୍ତ୍ରୀ ତ ଅପରିଚିତା ଜଣେ ନାରୀ···ତା ସହିତ ବା ମୋର ସମ୍ପର୍କ କଅଣ ଅଛି, ଆଜ ପର୍ଯ୍ୟନ୍ତ କେବଳ ମାସକୁ ଥରେ ମନିଅର୍ଡ଼ର ରସିଦରେ ତାର ଦସ୍ତଖତ ଦେଖିବା ଛଡ଼ା ? ଥରେ କେବଳ ଏଇ ପୁଅର ଅନ୍ନପ୍ରାସନ୍ନକୁ ଦିନେ ଯାଇଥିଲି, ଆଉ ଗୃହପାଞ୍ଚଥର ପୂଜା ଛୁଟିରେ ତିନିଚାରିଦିନ ପାଇଁ ଗାଁକୁ ଯାଇଥିଲି । ଏତିକି ତ ସମ୍ପର୍କ; ସରକାର ଆଉ ବେଶୀ ସମ୍ପର୍କ ରଖିବାକୁ ଦେଇ ନାହାନ୍ତି ।

ହାକିମ ବୁଝିପାରିଲେ ପ୍ରସଙ୍ଗଟା କ୍ରମେ କାହ୍ନୁବାବୁଙ୍କ ମନ ଗହନକୁ ପ୍ରବେଶ କରୁଚି । ସେଇଠି ସେ ପ୍ରସଙ୍ଗ ବନ୍ଦ କରି, ଆଉ ବର୍ଷେ ଚାକିରି ସମୟ ବଢ଼ାଇ ଚିଠି ଲେଖିଦେଲେ ଉପର ମହଲକୁ ।

× × ×

ଏହାର ଅଳ୍ପଦିନ ପରେ କାହ୍ନୁବାବୁ ପୁଣି ଦୁଇ ଖଣ୍ଡ ଦରଖାସ୍ତ ନେଇ ଛିଡ଼ାହେଲେ ହାକିମଙ୍କ ପାଖେ; ଭୟରେ ଥରବରେ ଦରଖାସ୍ତ ଦୁଇଟି ସାହେବଙ୍କୁ ବଢ଼ାଇ ଦେଇ ସେ ଛିଡ଼ାହୋଇ ରହିଲେ । ହାକିମ ଦରଖାସ୍ତ ଦୁଇଟି ପଢ଼ି କହିଲେ — ବେଶ୍, ବେଶ୍, ଅଜୟର ବାହାଘର କରୁଚ, ନା, କେଉଁଠି ହେଉଚି ?

—ଆଜ୍ଞା, ଆମ ଚପରାସି ଧନୁର ଝିଅ ସହିତ ।

—ଭଲ, ଭଲ । କନ୍ତୁ ତିନି ଦିନରୁ ବେଶୀ ଛୁଟି ଦେଇ ପାରିବି ନାହିଁ । ବଡ଼ି ସମସ୍ୟା । ଚାରିଆଡ଼େ ହାହାକାର, ଖୋଷଣ କାମ ପଡ଼ିଚି; କେବଳ ତୁମପାଇଁ ମୁଁ ତିନିଦିନ ଦେଇପାରେ ।

—ହଉ ସାର୍, ଯାହା ଆପଣଙ୍କର ଦୟା ।

ଅଜୟର ବିବାହ ହୋଇଗଲା । ବୋହୂକୁ ଶାଶୁ ପାଖରେ ରଖି ଅଜୟ, ଧନୁ ଓ କାହ୍ନୁବାବୁ ତିନିଦିନ ପରେ ଚତୁର୍ଥିଦିନ ଚାକିରିରେ ଯୋଗ ଦେଲେ ।

ଏହାର ପ୍ରାୟ ବର୍ଷକ ପରେ ଦିନେ କାହ୍ନୁବାବୁ ଚିଠି ପାଇଲେ ତାଙ୍କର ଗୋଟିଏ ନାତି ହୋଇଛି । ସେଦିନ କାହ୍ନୁବାବୁଙ୍କର ଆନନ୍ଦ ଦେଖେ କିଏ । ଆନନ୍ଦରେ ସେ ସେଦିନ ସମ୍ବାଦଟି ଚାରିଆଡ଼େ କହି ବୁଲିଲେ । ହାକିମଙ୍କୁ ମଧ୍ୟ କହି ଆସିଲେ । ହାକିମ ସମ୍ବାଦଟି ଶୁଣି ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲେ । କାହ୍ନୁବାବୁ ଦୀର୍ଘ ନିଶ୍ୱାସ ପକାଇ କହିଲେ, ସାର୍ ଅଜୟକୁ ଓ ମୋତେ ଆଜି ଗୋଟିଏ ଦିନ ଛୁଟି ଦିଆକୁ ହେବ ସାର୍, ଥରେ ବଂଶଧରକୁ ଦେଖି ଆସିବା ପାଇଁ ।

—ହଉ ଯାଆନ୍ତୁ ।

ଅଜୟ ଏ ପର୍ଯ୍ୟନ୍ତ ଏ ସମ୍ବାଦ ପାଇନାହିଁ । କାହ୍ନୁବାବୁ ହାକିମଙ୍କ ପାଖରୁ ଛୁଟିର ଅନୁମତି ଆଣି ଅଜୟ ପାଖକୁ ଗଲେ । ଅଜୟ ସେତେବେଳେ ତାର ଚୌକିରେ ନ ଥିଲା । ଧନୁକୁ ପଚାରିବାରୁ ଧନୁ କହିଲା, ହେଁ, ହେଁ, ଜୋଇଁ ଠିକ୍ ତୁମର ପରି, ସେ ପରି ତୁମ ଜାଗାରେ ଶୋଇଛି । ତୁମେ ସେ ଜାଗାକୁ ଯିବା ପୂର୍ବରୁ ସେ ଟିକିଏ ସେଠି କରି ଲେଜ ଉଠାଇ ଦିଏ ।

ଦୁହେଁଯାକ ହୋ ହୋ ହସି ଗଲେ ଶଯ୍ୟନ ଶିବିରକୁ । ଅଜୟକୁ ଠେଲି ଉଠାଇ କାହ୍ନୁବାବୁ କହିଲେ, ଚାଲ ବସାକୁ ଯିବା ।

ଅଜୟ ଆଶ୍ଚର୍ଯ୍ୟ ହୋଇ ପଚାରିଲା, କାହିଁକି ? ଏତେବେଳେ ?

—ଚାଲ, ବସାରେ କହିବି । ଏ ଆନନ୍ଦପୂର୍ଣ୍ଣ ସମ୍ବାଦଟି ଧୀରେ ସୁସ୍ଥେ କହିବା ତାଙ୍କର ଉଦ୍ଦେଶ୍ୟ ।

ବସାକୁ ଯିବା ବାଟରେ କାହ୍ନୁବାବୁ ବଜାର ସୌଦା କଲେ । ଘୃଚଣ୍ଠା ବେଳକୁ ବସାରେ ପହଞ୍ଚି କାହ୍ନୁବାବୁ ପୁଅକୁ କହିଲେ, ନେ, ଚୁଡ଼ା ଚିନି କିଣି ଆଣିଚି, ଶୀଘ୍ର ଖାଇଦେଇ ଜିନିଷପତ୍ର ସବୁ ବନ୍ଧା-ବନ୍ଧି କରି ରଖିଥା ମୁଁ ବଜାରକୁ ଯାଉଚି, ତୋ ବୋଉପାଇଁ ଗୁଡାଖୁ କିଣି ଆଣିବାକୁ ଭୁଲି ଯାଇଛି, ଆଣିବାକୁ ।

—କିନ୍ତୁ ଏ ଛୁଟି ! ଏତେ ଜିନିଷ ପତ୍ତର ! କଥା କଅଣ ?

—ନେ, ଏ ଶିଠି ପଢ଼ । ସବୁ ସଜାଡ଼ି ରଖିଥା ମୁଁ ଏଇନେ ଆସୁଚି । ବଜାରକୁ ଯାଇ କାହ୍ନୁବାବୁ ଗୁଡ଼ାଖୁ, ନାତି ପାଇଁ ରଙ୍ଗିନ ଜାମା, କଣ୍ଢେଇ କିଣି ଫେରି ଦେଖିଲେ ଅଜୟ ଚିଠିଟି ଧରି ସେମିତି ବସିଚି ଖଟ ଉପରେ । ଆଖିରୁ ତାର ଦୁଇଧାର ଲୁହ ଗଡି ଯାଉଚି, ତାର ହୋସ ନାହିଁ ।

କାହ୍ନୁବାବୁ ତାକୁ ଠେଲି ଦେଇ ଚିତ୍କାର କରି କହିଲେ— କିରେ, ଇଏ କଅଣ, ଗାଡି ଆସିବାକୁ ଆଉ ମୋଟେ ଅଧ ଘଣ୍ଟାଏ ଅଛି, ତୁ ବସିଛୁ । ଜିନିସପତର ସେମିତି ପଡିଚି ! କିରେ କାନ୍ଦୁଚୁ କିଆଁ ?

—ବାପା, ଏ ନାତି ହେବାରେ ତୁମେ ମନରେ ଆନନ୍ଦ ପାଉଚ କେମିତି ?

—କାହିଁକି, କଅଣ ହେଲା ?

—ବାପା, ମୁଁ ତେବେ ଖୋଲି କହୁଚି । ବାହା ହେବା ପରେ ଥରେ ମାତ୍ର ମୁଁ ଗୋଟିଏ ରବିବାରରେ ସେ ଗାଁକୁ ଯାଇଥିଲି । କିନ୍ତୁ ସେତେବେଳେ ସେ ମାରୁ ହୋଇଥିଲା । ଏ ପୁଅ ତେବେ ହେଲା କେମିତି ?

—ଓହୋ, ଏଇ କଥା । ଶ୍ୟମ, ରାମ । ଆମର ଏତେ ଧଇଲେ ଚଳେ । କରେ, ତୁ କେମିତି ହୋଇଥିଲୁ ? ମୁଁ ମୋ ଜୀବନରେ ପଚ୍ଚ ମୋଟେ ତିନ ସୃଇଥର ଗାଁକୁ ଯାଇଚ, ପ୍ରତିଥର ବି ସେମିତି କିଛି ଗୋଟାଏ ଅସୁବିଧା ଥାଏ । ଆମେ ବୃକଶିଆ ଲୋକ, ଆମର ଏତେ ଧଇଲେ ଚଳେ ! ଆଜିକାଲି ତ କମ୍ୟୁନିଷ୍ଟ ଚିନ୍ତା ଆସିଲାଣି । ପୁରୁଣା ପୁଞ୍ଜିବାଦୀ ନୈତିକତାର ମୂଲ୍ୟ ବଦଳି ଗଲାଣି, ଆଉ କେହି କାହାର ସ୍ତ୍ରୀ ବା ସନ୍ତାନ ବୋଲି ପରିଚିତ ହେବେ ନାହିଁ, ସମସ୍ତେ ସମାଜର, ରାଜ୍ୟର; ଯେ କେହି ଜଣେ ନିମିତ୍ତ ମାତ୍ର ହେଲେ ହେଲା, ତାର ବି ଦରକାର ରହିବ ନାହିଁ । ବିଜ୍ଞାନ ଯେଉଁ ଆଡ଼କୁ ଗତି କରୁଚି, ରଜ ଓ ବୀର୍ଯ୍ୟ ଅଲଗା ଅଲଗା ବୋତଲରେ ଥୁଆ ହୋଇଥିବ, ମିଶାଇ ଦେଇ କାଚ ବୋତଲରେ ସନ୍ତାନ ଜନ୍ମ ହେବ ।

—ବାପା, ତେବେ ମୁଁ ବି ଏମିତି ଜନ୍ମ ହୋଇଥିଲି ?

—ଆରେ ହଁ, ହଁ । ଗୁଲ୍; ଉଠ୍, ବେଳ ହୋଇଗଲାଣି । କଏ କାହାର ପୁଅରେ ! ହଁ ମୋହମୁଦ୍‌ଗର ପଢ଼ି ନାହଁ—କା ତବ କାନ୍ତା, କସ୍ତେ ପୁତ୍ରଃ; ସଂସାରୋଽୟମତୀବ ବିଚିତ୍ରଃ ।

—ହଁ ବାପା, ଅତୀବ ବିଚିତ୍ର !!

ଅବାଧ ପ୍ରଣୟ କୁଆଡ଼େ ଉଚ୍ଚ ଶିକ୍ଷାର ମାନଦଣ୍ଡ ହେଲାଣି ! ଗୁଲ୍ ପିବା ।



# ବଟ ମହାପୁରୁଷ

ପଶୁ ହିଂସ୍ର ହୁଏ ତା'ର କ୍ଷୁଧାପାଇଁ । କ୍ଷୁଧାର ତୃପ୍ତି ହେବା ପରେ ସେ ହୁଏ ଶାନ୍ତ; କିନ୍ତୁ ମଣିଷ ହିଂସ୍ର ହୁଏ ପ୍ରାଧାନ୍ୟ ପାଇବା ପାଇଁ । ସେଥିରେ ତୃପ୍ତି ନାହିଁ, ତେଣୁ ତା'ର ହିଂସାର ସୀମା ନାହିଁ । ପୁଣି ପଶୁ ତା'ର କ୍ଷୁଧାର ତୃପ୍ତିପାଇଁ ପ୍ରୟୋଗ କରେ ଶାରୀରିକ ଶକ୍ତି, ତେଣୁ ତା'ର ଶକ୍ତି ସୀମିତ; କିନ୍ତୁ ମଣିଷ ପ୍ରୟୋଗ କରେ ମାନସିକ ଶକ୍ତି, ତେଣୁ ତା'ର ସୀମା ନାହିଁ । ମଣିଷ ତେଣୁ ହୁଏ ପଶୁଠାରୁ ହଜାର ହଜାର ଗୁଣ ହିଂସ୍ର, କ୍ରୂର, ପିଶାଚ । କେବଳ ଗୋଟାଏ କଥାରେ ପଶୁ ଆଉ ମଣିଷ ସମାନ । ଇତର ପ୍ରାଣୀମାନେ ଯେପରି ଶିକାର ଉଦ୍ଦେଶ୍ୟରେ ନିଜକୁ ଘୋଡ଼ାଇ ଲୁଚାଇ ରଖନ୍ତି ପାରିପାର୍ଶ୍ୱିକ ଅବସ୍ଥା ସାଙ୍ଗରେ ଖାପ ଖୁଆଇ, ମଣିଷ ସେମିତି ଗୋଟାଏ ଆଦର୍ଶ ଭିତରେ ଲୁଚାଇ ରଖେ ତା'ର କ୍ରୂରତା । ବାହାରେ ବଡ଼ ବଡ଼ କଥା କହି ଲୋକଙ୍କୁ ଭୁଲାଇ ରଖି ସେ ଭିତରେ ଭିତରେ ମଣିଷ ଶିକାର କରେ, ନିଜ କବଳକୁ ଆଣେ । ଜାଲ୍, ଜୁଆଚୋରି, କଳାପୋଚେଇ କରି ଅର୍ଥ ଉପାର୍ଜନ ଭିତରେ ଭିତରେ ଚାଲିଥାଏ; ବାହାରେ କିନ୍ତୁ ଚାଲିଥାଏ ଅନ୍ୟକୁ ଧର୍ମୋପଦେଶ, ସ୍କୁଲ୍ କଲେଜ ଦେବମନ୍ଦିର ଧର୍ମଶାଳା ତିଆରି, ଦାନ । ଲୋକେ ବୁଝିପାରିଲେ ମଧ୍ୟ କିଛି କହନ୍ତି ନାହିଁ । କାରଣ ସେଇ ବାଟ ପ୍ରତ୍ୟେକେ ଅନୁସରଣ କରନ୍ତି । ମହାକାଳ ହସୁଥାଆନ୍ତି ।

ଜଣେ ଦୁଇଜଣ ଏପରି ହେଲେ ହୁଏତ ଚଳି ଯାଆନ୍ତା; କିନ୍ତୁ ଜଣକୁ ଅନୁସରଣ କରି ପ୍ରତ୍ୟେକେ ଯେତେବେଳେ ସେଇ ପନ୍ଥା ଅନୁସରଣ କରିବାରେ ଲାଗି ପଡ଼ନ୍ତି, ଅବସ୍ଥା ପ୍ରତ୍ୟେକଙ୍କ ପକ୍ଷରେ ସଙ୍ଗୀନ୍ ହୋଇଯାଏ। ଦିନେ ଭୂଷକିନା ନଆଁ ଜଳି ଉଠେ ଦେଶସାରା। ସମସ୍ତେ ଧ୍ୱଂସ ପାଇ ଯାଆନ୍ତି ସେଥିରେ, ଆଉ କେହି ରୋଧ କରି ପାରେ ନା ସେ ନିଆଁକୁ। ତା'ପରେ କିଛି କାଳପାଇଁ ସବୁ ଶୂନ୍‌ଶାନ୍। ମନୀଷୀମାନେ ସତ୍ୟ ପ୍ରଗୃତ୍ତ କରି ଯାଆନ୍ତି; କିନ୍ତୁ ତାକୁଇ ପାଣ୍ଠି କରି ଶିଷ୍ୟ ପ୍ରଶିଷ୍ୟମାନେ ଅନୁଷ୍ଠାନ ଗଢ଼ି ଯେତେବେଳେ ନିଜର ଦଳ ପ୍ରାଧାନ୍ୟ ପାଇଁ ପ୍ରଗୃତ୍ତ କରି ବୁଲନ୍ତି ନିଜର ଦଳ ବଢ଼ାଇବାପାଇଁ ସେତେବେଳେ ସତ୍ୟଟି ଅଡ଼ୁଆ ଛଡ଼ୁଆ ହୋଇଯାଏ। ମିଥ୍ୟା ବି ସରଳ ସଳଖ ମିଥ୍ୟା ରହେ ନାହିଁ, ସତ୍ୟ ସାଙ୍ଗରେ ଗୁଡ଼େଇ ଭୁଡ଼େଇ ସିଏ ବି ହୋଇଯାଏ ଅଡ଼ୁଆ ଛଡ଼ୁଆ। ମାଛଖିଆ ମହାପାତ୍ରମାନଙ୍କୁ, ଅର୍ଥାତ୍ ତଥାକଥିତ ବୁଦ୍ଧିମାନ୍‌ମାନଙ୍କୁ, କଙ୍କଡ଼ାକୁ ଗୋଳପାଣି ପରି, ଏଇଟା ହୁଏ ସୁବର୍ଣ୍ଣ ସୁଯୋଗ; କିନ୍ତୁ ସେ ସୁଯୋଗ ବି ବେଶୀ ଦିନ ରହେ ନାହିଁ। ଆସିଯାଏ ମହାପ୍ଲାବନ। ସମସ୍ତେ ସେଥିରେ ଭାସି ଯାଆନ୍ତି। ତା'ପରେ କିଛି ଦିନ ଶୂନ୍‌ଶାନ୍। ଇଏହି ହେଲା ମଣିଷର ଇତିହାସ, ଯେଉଁ ଇତିହାସପାଇଁ ମଣିଷ ଆଜି ଗର୍ବ କରେ !

ମଣିଷ ଦାଉରେ ପଡ଼ି ଗଛ, ମୂକ ଗଛ ବି, କମ୍ ହଟହଟାରେ ପଡ଼େ ନାହିଁ। ପଶୁ ପକ୍ଷୀଙ୍କ କଥାତ ଗୁଡ଼, ଯୁଦ୍ଧରେ କେତେ ପଶୁଙ୍କ ବୃଥା ଯେ ପ୍ରାଣ ଯାଏ ତା'ର ଇୟତ୍ତା ନାହିଁ। ଅଥଚ ସେମାନେ କିଛି ଜାଣନ୍ତି ନାହିଁ, କେଉଁଥିପାଇଁ ସେମାନେ ହତ ହେଉଛନ୍ତି।

ଆପଣ କେବେ ଯେବେ ନଗପୁର ଆଡ଼େ ଯାଇଥିବେ ତେବେ ନିଶ୍ଚୟ ବଟ ମହାପୁରୁଷଙ୍କ ଗୁମ୍ଫାତଳେ ବସି ବିଶ୍ରାମ ନେଇଥିବେ

(ହାୟ ! ସେ ମହାପୁରୁଷ ଆଉ ନାହାନ୍ତି । ମଣିଷମାନଙ୍କ ଦାଉରେ ପଡ଼ି ତାଙ୍କୁ ଇହଧାମ ଛାଡ଼ିବାକୁ ପଡ଼ିଚି !)

ନବପୁର ଗାଁମୁଣ୍ଡରେ ବଟ ମହାପୁରୁଷଙ୍କ ଆସ୍ଥାନ । ପ୍ରକାଣ୍ଡ ମହୀରୁହ । ଅସଂଖ୍ୟ ଓହଳ ସବୁ ଓହଳ ପ୍ରକାଣ୍ଡ ପ୍ରକାଣ୍ଡ ଖମ୍ବ ପାଲଟି ଗଲଣି । ପ୍ରାୟ ମାଣେ ଜମି ମାଡ଼ି ବସିଚନ୍ତି ବଟ ମହାପୁରୁଷ। ତଳଟି ପରିଷ୍କୃତ ପରିଚ୍ଛନ୍ନ, ଯେପରି ପକ୍କା ଚଟାଣ। ମହାପୁରୁଷଙ୍କ ତଳଦେଇ ସଡ଼କ ଚାଲି ଯାଇଚି ପଶ୍ଚିମରୁ ପୂର୍ବକୁ । ପୂର୍ବକୁ ଢ଼ିହସାହି, ଦେବୀପୁର, ଧାନୁଆ, ଗମରା ଇତ୍ୟାଦି ଗାଁମାନ । ପଶ୍ଚିମକୁ ନୂଆଗାଁ, ନୂଆପାଟଣା, ଅହମ୍ମଦପୁର ଇତ୍ୟାଦି । ଏ ସବୁ ଗାଁ ନବପୁରଠାରୁ ଅଳ୍ପ ଦୂରରେ ।

ସଡ଼କ ଉତ୍ତର ପଟକୁ ଲାଗି ନବପୁର ଗାଁ ମଶାଣି । ସେଠି ସାନ ବଡ଼ କେତେ ମଣିଷ ମୁଣ୍ଡ, କେତେ ଛିଣ୍ଡା ମସିଣା ଚଟକଆ ଆଦି ପଡ଼ିଚି, ଆହୁରି ପଡ଼ିବ । ମଝିରେ ମଝିରେ ବୋଲ ହରି, 'ହରି ବୋଲ' କୁହାଟରେ ମଶାଣି କମ୍ପି ଉଠେ, ଦାଉ ଦାଉ ଚିତା ଜଳି ଉଠେ । ତା'ପରେ ଶୂନ୍‌ଶାନ୍ କିଛିକ୍ଷଣ ପାଇଁ । ପୁଣି ଗାଁ ମାଇପି-ମାନେ କାନ୍ଦି ବୋବାଳି ଗୁଡୁ ଗୁଡ଼ୁ ହାଣ୍ଡି ମାଠିଆ ଧରି ସେଠି ରୁଣ୍ଡ ହୁଅନ୍ତି । ହାଣ୍ଡି ଫାଣ୍ଡି ମଶାଣିରେ ଫୋପାଡ଼ି ଦେଇ ପାଖ ପୋଖରୀରେ ଗାଧୋଇ ପାଧୋଇ ପୁଣି କାନ୍ଦି କାନ୍ଦି ଫେରି ଯାଆନ୍ତି ଯେ ଯାହା ଘରକୁ । ଦିନେ ଦିଦିନ କାନ୍ଦନ୍ତି । କାନ୍ଦଣା ଥମି ଆସେ। କିଛି ଦିନ ପରେ ପୁଣି ହସ ଖୁସି । ଯିଏ ମଲା ସିଏ ଗଲା । ତା'ର ଦେହ ନବପୁର ମଶାଣିରେ ମାଟି ହୋଇ ମିଶି ଘାସ ବା ଗଛର ଗଛକୁ ସାର ଯୋଗାଇଲା । ଆଉ ତା'ର ଆତ୍ମା ? କବରସ୍ଥାନମାନେ କହିବେ "ସବୁ ଆତ୍ମାଯାକ ଯାଇ ପ୍ରକାଣ୍ଡ ଗୋଟାଏ ଘରେ ଅପେକ୍ଷା କରି ରହିଥାଆନ୍ତି । କଳ୍ପ ଶେଷରେ ସେମାନଙ୍କ ବିଚାର ହୁଏ,

ତା’ପରେ କେହି କେହି ନରକକୁ ଯାଆନ୍ତି, କେହିବା ସ୍ୱର୍ଗକୁ ।” ନାସ୍ତିକମାନେ କହିବେ “ଭସ୍ମୀଭୂତସ୍ୟ ଦେହସ୍ୟ ଆତ୍ମା କୁଆଡୁ ଆସିଲା ?” ଗୀତା କହେ “ଆତ୍ମା ଅମର !” ପଣ୍ଡିତେ ଯିଏ ଯାହା କହନ୍ତୁ ନରପୁରର ଲୋକେ ପ୍ରତ୍ୟକ୍ଷ ପ୍ରମାଣ ପାଇଛନ୍ତି ଯେ ଅନେକ ଭସ୍ମୀଭୂତ ଦେହ ଭୂତ ହୋଇ ନିଜ ଘର ବା ପର ଲୋକର ମାୟା ଛାଡି ନ ପାରି ଏହି ବଟ ମହାପୁରୁଷଙ୍କ ଦେହରେ ଆଶ୍ରା କରି ରହି ଯାଆନ୍ତି, ସ୍ୱର୍ଗକୁ ଯିବାକୁ ବି ଇଚ୍ଛା କରନ୍ତି ନାହିଁ । ଏଇ ତ ସେଦିନ ଅନ୍ଧା, ଗଜାଟୋକାଟା, ଗଜାଟୋକା ବୋହୂଟାକୁ ଛାଡି ଗୋଟାଏ ଝାଡ଼ା ପରେ ଚାଲିଗଲା । ଏଇ ଶ୍ମଶାନରେ ତା ବୋହୂ କାନ୍ଦି କାନ୍ଦି ମୂର୍ଚ୍ଛା ଯାଇଥିଲା ! ତା ଶବ ଦାହ କରି ଲୋକେ ଫେରୁଥିବାବେଳେ ଦେଖିଲେ ବଟ ମହାପୁରୁଷଙ୍କ ଗୋଟାଏ ମୋଟା ଡାଳ ମଚ ମଚ କରି ଭାଙ୍ଗି ପଡ଼ିଗଲା, ଅଥଚ କଡାସ ଫଡାସ କିଛି ନାହିଁ । ସମସ୍ତେ ଜାଣିଲେ ବୋହୂ-ମାୟା ଛାଡ଼ି ନ ପାରି ଅନ୍ଧା ବଟ ମହାପୁରୁଷଙ୍କ ଗୋଟାଏ ଡାଳରେ ବସା ବାନ୍ଧି ରହିଲା । ମାସେ ନ ପୁରୁଣୁ ଅନ୍ଧା-ବୋହୂ ଗ୍ରାମ ପ୍ରଧାନ ସାଙ୍ଗରେ କଲିକତା ପଳେଇଲା । ଅନେକେ କୁହାକୁହି ହେଲେ, କଥାଟି ବି ଜଣାପଡିଗଲା । ଗ୍ରାମ ପ୍ରଧାନ କୁଶିକ୍ଷାରେ ଅନ୍ଧା-ବୋହୂ ଅନ୍ଧାକୁ ବିଷ ଦେଇ ମାରି ଦେଇଚି । ତଥାପି ଏପର୍ଯ୍ୟନ୍ତ ଅନ୍ଧା ବଟ ମହାପୁରୁଷଙ୍କ ଡାଳରେ ଅଛି, ଲୋକେ ଦେଖୁଛନ୍ତି । ଏମିତି କେତେ ଯେ ଭୂତ ବଟ ମହାପୁରୁଷଙ୍କ ଦେହରେ ରହିଲେଣି କିଏ ତା’ର କଳନା କରିବ ! କେହି କେହି ଦେଖିଚନ୍ତି ରାତି ଅଧରେ ଅସଂଖ୍ୟ ଭୂତ ସେ ଗଛରୁ ଓହ୍ଲାଇ ସଡକେ ସଡ଼କେ କୁଆଡ଼େ ଯାଆନ୍ତି । ଖାଲି ଯେ ନରପୁରର ଭୂତମାନେ ବଟ ମହାପୁରୁଷଙ୍କଠି ଅଛନ୍ତି ତା ନୁହେଁ, ଆଖ ପାଖ ପଚିଶଖଣ୍ଡ ଗାଁର ଭୂତମାନେ ମଧ୍ୟ ସେଠି ରହନ୍ତି ଏମିତି ଶୁଣାଯାଏ ।

ବଟ ମହାପୁରୁଷଙ୍କ ତଳେ ବର୍ଷା ଟୋପାଏ କି ଖରା ଚେନାଏ ବି ପଡ଼େ ନାହିଁ । ଶୀତଦିନରେ ମଧ୍ୟ ତାଙ୍କ ତଳଟି ଉଷୁମ, ମା-କୋଳ ଭଳି । ଘୋର ବର୍ଷା ଆସିଲେ ଗାଈଆଳ ପିଲାଏ ଗାଈ ଗୋଠକୁ ବିଲରୁ ବା ଦଣ୍ଡାରୁ ଘଉଡ଼େଇ ନେଇ ଆସନ୍ତି ବଟ-ମହାପୁରୁଷଙ୍କ ତଳକୁ । ଗାଈ ଛେଳି ମେଣ୍ଢା ଆଦି ଶହ ଶହ ପଶୁ ନିରାପଦରେ ଶୁଖିଲାରେ ଗଛତଳେ ଗୁହିକାତ ମେଲେଇ ଦେଇ ଦେହକୁ ଦେହ ଲଗେଇ ଦେଇ ଅଳସ ଭାଙ୍ଗନ୍ତି, ପାକୁଳି କରନ୍ତି । ଗାଈଆଳ ପିଲାଏ ବଟ ମହାପୁରୁଷଙ୍କ ରାସ୍ତାପର ଲମ୍ବା ଚଉଡ଼ା ଡାଳମାନଙ୍କରେ ଦୌଡ଼ାଦୌଡ଼ି କରନ୍ତି ଆନନ୍ଦରେ, କେହି ବା ଗୋଟାଏ ଡ଼ାଳରେ ଶୋଇ ଆନନ୍ଦରେ ଗୀତ ଗୁଣ୍ଡେ "କହ କହ ବାଳା କାହାର ଅବଳା, କମ୍ପା ଏକା ବସି କାନ୍ଦୁଚରେ, କହ କହ ବାଳା······" ଆଉ କେହି ବା ଗୋଟାଏ ଓହଳରେ ଦୋଳି ଖେଳେ । ଖରା ଦିନର ଉଦୁଉଦିଆ ଖରାବେଳେ ବାଟୋଇ ଦୌଡ଼ୁ-ଥାଏ ବଟ ମହାପୁରୁଷଙ୍କୁ ଲକ୍ଷ୍ୟ କରି । ପାଖ ହୋଇଗଲା ମାତ୍ରେ ବଟ ମହାପୁରୁଷଙ୍କ ଦେହରୁ ଝିଲକାଏ ହେମାଳ ପବନ ବାଟୋଇକୁ ପାଗ୍ରେଣ୍ଟି ଆଣେ । ବାଟୋଇ ମୁଣ୍ଡରୁ ଠେକାଟା ଫିଟାଇ ଦେଇ ଝାଳ ପୋଛୁ ଥକାମାରି ଗୋଟାଏ ଓହଳକୁ ଡ଼େରି ବସିଯାଏ ଦଣ୍ଡେ । ତା'ପରେ ପାଣିଛଣରୁ ଲଙ୍କାମରିଚ ଗୋଳା ହୋଇଥିବା ଥଣ୍ଡା ତୋରାଣିରୁ ଏକା ନିଶ୍ୱାସକେ ପେଟେ ପିଇ ବଟ ମହାପୁରୁଷଙ୍କ ଗୋଟାଏ ପାଦରେ ମୁଣ୍ଡ ରଖି ବେହୋସ୍ ହୋଇ ଶୋଇଯାଏ, ଉଠେ ଗୁଇ-ନେଉଟାଣି ବେଳକୁ, ଆଉ ମହାପୁରୁଷଙ୍କ ପାଦ ଛୁଇଁ ଜୁହାର ହୋଇ ଚାଲିଯାଏ ବାଟେ ବାଟେ । ଶୀତଦିନ ରାତିରେ ମହାଜନମାନଙ୍କ ୩୦।୪୦ ଖଣ୍ଡ ମାଲବୁହା ବଳଦଗାଡ଼ିର କେଁ କଟର ବନ୍ଦ ହୋଇଯାଏ ବଟ ମହାପୁରୁଷଙ୍କ ଆସ୍ଥାନ ତଳେ ।

ବଳଦମାନଙ୍କୁ ଫିଟାଇ ଦେଇ ଓହ୍ଲମାନଙ୍କରେ ବାନ୍ଧି ଦେଇ ବୈଷେଇ କରିବାରେ ଲାଗି ଯାଆନ୍ତି, ଖିଆପିଆ ପରେ ବଳଦମାନଙ୍କୁ ଖାଇବାକୁ ଦେଇ ଆରାମରେ ଶୋଇ ଯାଆନ୍ତି ବଟ ମହାପୁରୁଷଙ୍କ ଚଉଳ, ବାହାରର ଥଣ୍ଡା ସେମାନଙ୍କୁ ସ୍ପର୍ଶ କରିପାରେ ନାହିଁ, ବଟ ମହାପୁରୁଷ ଖଣ୍ଡେ ଅଦୃଶ୍ୟ ଉଷ୍ମ କମ୍ବଳ ସମସ୍ତଙ୍କୁ ଘୋଡ଼ାଇ ଦିଅନ୍ତି । ସକାଳୁ ଉଠି ସେମାନେ ମହାପୁରୁଷଙ୍କ ଆସ୍ଥାନ ପରିଷ୍କୃତ କରି ଦେଇ ଜୁହାର ହୋଇ ଚାଲି ଯାଆନ୍ତି ।

ଏ ମହାପୁରୁଷଙ୍କୁ ଆଣିଥିଲେ ରାମଚନ୍ଦ୍ର । ସେ ଗୁରୁପୁରୁଷ ଆଗ କଥା । ରାମଚନ୍ଦ୍ର ଥିଲେ ଅତି ଧାର୍ମିକ, ସତ୍ୟବାନ୍, ନିଷ୍ଠାବାନ୍ ଅଥଚ ନୀରବ ମୌନୀ ଲୋକ । ଗାଁ ଗାଁ ଭିତରେ ଯେତେବେଳେ କନ୍ଦଳ କ୍ରମେ କ୍ରମେ ବୃଦ୍ଧି ପାଇବାକୁ ଲାଗିଲା ସେତେବେଳେ ସେ ବ୍ୟଥିତ ହୋଇ ଚାଲିଗଲେ ହିମାଳୟକୁ ତପସ୍ୟା କରିବାକୁ । ସେ ଯୁଗରେ ସମାଜରେ ପାପବୃଦ୍ଧି ହେଲେ ନେତା ଗୋଷ୍ଠୀବାଦ, ସମାଜବାଦ, କୂଟନୀତି, ରାଜନୀତି, ପେଞ୍ଚ ପ୍ରୟୋଗ କରୁ ନ ଥିଲେ, ସମସ୍ତଙ୍କ ପାପକୁ ନିଜର ପାପ ବୋଲି ଧରି ନେଇ ତାକୁ ଦୂର କରିବାକୁ ତପସ୍ୟା କରୁଥିଲେ, ଉପବାସ କରୁଥିଲେ । ଏବଂ ତପସ୍ୟା ପରେ ଫେରି ଆସି ପୁଣି ଧର୍ମ, ଆଧ୍ୟାତ୍ମିକତା ସଂସ୍ଥାପନ କରୁଥିଲେ । ବର୍ତ୍ତମାନ ଯୁଗରେ ନେତାଏ ପ୍ରଚାର କରିଛନ୍ତି, ଧର୍ମ, ଆଧ୍ୟାତ୍ମିକତା ଫିଙ୍ଗିଦିଅ, ବିଜ୍ଞାନଯୁଗରେ ସେ ସବୁର ସ୍ଥାନ ନାହିଁ, ଶିଳ୍ପ ବ୍ୟବସାୟଦ୍ୱାରା ଅର୍ଥ ଉପାର୍ଜନ ବଢ଼ାଅ, ତାହାହିଁ ଜୀବନର ଏକମାତ୍ର ଲକ୍ଷ୍ୟ । ଧର୍ମ ଅଳୀକ କଳ୍ପନା, ଅର୍ଥ ବାସ୍ତବ ସତ୍ୟ । କିଏ ଭଲ, କିଏ ଠିକ୍ ମହାକାଳ କେବଳ ଜାଣନ୍ତି ! ହୁଏତ ମିଥ୍ୟାଟା ହିଁ ସତ୍ୟ, ସତ୍ୟଟା ହିଁ ମିଥ୍ୟା !! ହୁଏତ ସେ କଳ୍ପନା ମଣିଷକୁ କରାଏ ଦେବତା, ଆଉ ସେ ସତ୍ୟ କରାଏ ରାକ୍ଷସ !! ବର୍ଷେକାଳ ହିମାଳୟରେ

ତପସ୍ୟା କରିବା ପରେ ରାମଚନ୍ଦ୍ର ଫେରିଲେ ନରସୁର, ସାଙ୍ଗରେ ବରଗଛର ଝୁରି ଧରି । ଆଖ ପାଖ ପଚିଶଖଣ୍ଡ ଗାଁର ଲୋକେ ମହାଉତ୍ସାହରେ ଓ ସମ୍ଭ୍ରମରେ ବଟ ମହାପୁରୁଷଙ୍କୁ ସ୍ଥାପନା କଲେ । ସାତଦିନ ଧରି ଧୂମ୍‌ଧାମ୍‌ରେ ଖିଆ ପିଆ ଚାଲିଲା । ସେଇ ଝୁରି ଆଜି ବିରାଟ ବଟ ମହାପୁରୁଷ । ତାଙ୍କରି ଯୋଗୁଁ ସମସ୍ତ ବାଦବିବାଦ ଭୁଲି ପୁଣି ମିଳିତ ହେଲେ ତାଙ୍କରି ଶତ ଶତ ବାହୁଛାୟା ତଳେ । ରାମଚନ୍ଦ୍ର ଦେହତ୍ୟାଗ କଲା ପରେ ସ୍ୱର୍ଗ ନ ଯାଇ ରହିଗଲେ ବଟ-ମହାପୁରୁଷଙ୍କ ଦେହରେ । ଏ ପର୍ଯ୍ୟନ୍ତ ତା'ଙ୍କ ବଂଶରୁ କେହି ହେଲେ ଜଣେ ଖରାଦିନରେ ବଟ ମହାପୁରୁଷଙ୍କ ତଳେ ପାଣିଛତ୍ର ଦିଅନ୍ତି, ପ୍ରତିଦିନ ବଟେଶ୍ୱରଙ୍କ ପୂଜା କରନ୍ତି । ବୀଣାକର ଯେତେବେଳେ ମନ୍ଦିର ଭିତରେ ଶିବାଷ୍ଟକ ବୋଲୁଥିଲେ—

"ଗିରିରାଜସୁତାନ୍ୱିତବାମତନୁ, ତନୁନିନ୍ଦିତରାଜିତକୋଟିବିଧୁମ୍,
ବିଧୁ ଖଣ୍ଡବିମଣ୍ଡିତ ଭାଲତଟମ୍, ପ୍ରଣମାମି ଶିବମ୍ ଶିବକଳ୍ପତରୁମ୍ ।"

କିମ୍ବା ରାବଣଙ୍କ ଶିବତାଣ୍ଡବ ବୋଲୁଥିଲେ—

"ଜଟାଟବୀଗଳଜ୍ଜଳପ୍ରବାହପ୍ଲାବିତସ୍ଥଳେ,
ଗଳେଽବଲମ୍ବ୍ୟଲମ୍ବିତାମ୍ ଭୁଜଙ୍ଗତୁଙ୍ଗମାଳିକାଂ,
ଡମଡ୍ଡମ ଡମଡ୍ଡମ ନିନାଦ ବଡ୍ଡମର୍ବୟଂ,
ଚକାରଚଣ୍ଡତାଣ୍ଡବମ୍ ତନୋତୁ ନଃ ଶିବଃ ଶିବମ୍ ।"

ସେତେବେଳେ ମନ୍ଦିର ଭିତର ଗମଗମ ହୋଇ ଉଠୁଥିଲା । ବଟ ମହାପୁରୁଷ ମଧ୍ୟ ଆବେଗରେ କମ୍ପି ଉଠୁଥିଲେ । ବୀଣାକରଙ୍କ ନରକଳେବର ନବପୁର ମଶାଣିରେ ମିଶି ଯାଇଛି; କିନ୍ତୁ ସେ ବି ନରପୁର ମାୟା ନ ଛାଡ଼ି ରହିଯାଇଛନ୍ତି ବଟ ମହାପୁରୁଷଙ୍କ ଦେହରେ ।

ପ୍ରତ୍ୟେକ ବର୍ଷ ଦ୍ୱିତୀୟା ଓଷା ଦିନ ବଟ ମହାପୁରୁଷଙ୍କ ମାର୍ଜନା, ସ୍ନାନ ହୁଏ । ପୂଜା ହୁଏ । ଢୋଲ ମହୁରି ବାଜେ । ଗୁଡ଼ପଣା ଭୋଗ ହୁଏ । ଗାଁ ମାଇପିମାନଙ୍କ ଶଙ୍ଖ ହୁଳହୁଳି ଶବ୍ଦରେ ବଟ ମହାପୁରୁଷ ଆନନ୍ଦରେ କମ୍ପି ଯାଆନ୍ତି । ସ୍ନାନ ହୁଏ । ତା'ପରେ ବଟ ମହାପୁରୁଷ ପିନ୍ଧନ୍ତି ନୂଆଲୁଗା । ତା'ଙ୍କର ପ୍ରତ୍ୟେକ ଓହଳରେ ଓ ମୂଳରେ ସିନ୍ଦୂର ଲାଗିହୁଏ । ଧୂପଝୁଣା ବାସନାରେ ବଟ ମହାପୁରୁଷଙ୍କ ଆସ୍ଥାନ ମହକି ଉଠେ । ତା'ପରେ ଚାଲେ ଭୋଜି ଭାତ । ପଚିଶ ଖଣ୍ଡ ଗାଁର ଲୋକେ, ଏପରି କି ଅହମ୍ମଦପୁରର ପଠାଣମାନେ ବି, ଏକାଠି ବସି ଖାଆନ୍ତି । ଦିନ ରାତି ବଟ ମହାପୁରୁଷଙ୍କ ତଳେ ଯାତ୍ରା, ବାଘ ପାଲା, ଦୋକାନପସରା ବସେ । ଇଏ ହେଲା ତାଙ୍କର ବାର୍ଷିକ ପୂଜା; କିନ୍ତୁ କାହାର ପିଲା ହେଲେ, ବା କାହାର ମନସ୍କାମନା ପୂର୍ଣ୍ଣ ହେଲେ, ପୁଅ ଚାକିରି ପାଇଲେ ବା ବାହାଘର ହେଲେ ସେ ପୂଜା କରାଏ । ଏମିତି ପୂଜା ଲାଗିଥାଏ ବର୍ଷସାରା, ବଟ ମହାପୁରୁଷଙ୍କୁ କେନ୍ଦ୍ର କରି ପଚିଶଖଣ୍ଡ ଗାଁ ଭେଦାଭେଦ ଦୂର କରି ମିଳିମିଶି ଚଳନ୍ତି ।

ହିମାଳୟର ଏ ମହୀରୁହ ହିମାଳୟ ପରି ନରିପୁର ସୀମାରେ ଏବଂ ପଚିଶ ଖଣ୍ଡ ଗାଁର କେନ୍ଦ୍ରସ୍ଥଳରେ ବିରାଜମାନ ଗୁରୁପୁରୁଷ ହେବ ।

ନରିପୁର ଗାଁ ମଶାଣିକୁ ଲାଗି ଉତ୍ତରପଟେ ହଳଦିଆ ଗାଁ । ବଡ଼ ଗାଁଟାଏ । ହଳଦିଆର ଲୋକେ ନରିପୁରଆମାନଙ୍କ ଠାରୁ ଅଧିକ ଶିକ୍ଷିତ ଓ ଥିଲାବାଲା । ନରିପୁରରେ ଗୋଟିଏ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ମାଇନର ସ୍କୁଲରେ ପରିଣତ ହୋଇପାରି ନାହିଁ । ତା'ର ଦରକାର ପଡ଼ିନାହିଁ, କାରଣ ପିଲାଏ "କଳା-କଳେବର କହ୍ନାଇ ସଙ୍ଗେ ରୋହିଣୀ ସୁତ..." ବୋଲି ଶିଖୁନ

ଶିଖୁଣ୍ଡୁ ବଳଦଲଙ୍ଗୁଡ଼ି ମୋଡ଼ି ହେଃ ହେଃ ଗଲା ବଳଦ ମୋର…… ଭିତ୍ରୁ କହୁ ବିଲକୁ ଦୌଡ଼ନ୍ତି ସକାଳୁ; କିନ୍ତୁ ହଳଦିଆର ମାଇନର ସ୍କୁଲ ଉଚ୍ଚ ବିଦ୍ୟାଳୟରେ ପରିଣତ ହେଲିଣି ଅନେକ ଦିନୁ, ଆଜି ଅଳ୍ପ ଦିନ ଭିତରେ ସେ କଲେଜରେ ପରିଣତ ହେବ । ହଳଦିଆର ଅଧିକାଂଶ ଚାକିରିଆ ଓ ବଡ଼ ବ୍ୟବସାୟୀ । ସେମାନଙ୍କ ଭିତରୁ ଅନେକ ବଡ଼ ବଡ଼ ଚାକିରିଆ ବି ଅଛନ୍ତି । ବିଧାନସଭାର ସଭ୍ୟ, ସରପଞ୍ଚ, ପଞ୍ଚାୟତ ସମିତି ଚେୟାରମେନ୍ ମଧ୍ୟ ହଳଦିଆର ଲୋକେ। ନବପୁରରେ ଖାଲି ନୂଆଣିଆ ଅନ୍ଧାରୁଆ ଚାଳଘର, ମଣିଷ ରହିବା ଘରଠାରୁ ଗାଈଗୋରୁ ରହିବା ଘର ବଡ଼ । କିନ୍ତୁ ହଳଦିଆରେ ଅନେକ କୋଠାବାଡ଼ି ।

ହେଲେ, ନବପୁରର ଗର୍ବ ତା'ର ବଟ ମହାପୁରୁଷ । ଯେତେ ବଡ଼ ଗାଁ ହେଉନା ପଛକେ ତାକୁ ମୁଣ୍ଡ ନୁଆଁଇବାକୁ ହେବ ନବପୁରର ବଟ ମହାପୁରୁଷଙ୍କ ତଳେ । କଳ୍ପତରୁ ସେ, ପ୍ରତ୍ୟକ୍ଷ ଦେବତା ।

କିନ୍ତୁ ହେଲେ କିଅଣ ହେଲା, ଯୁଗ ବଦଳୁଛି । ପଞ୍ଚାୟତରାଜ ଚାଲିଚି । ଲୋକେ ଶିକ୍ଷିତ ହେଲେଣି । ଦେଶର ଭଗୀରଥ ବିଦେଶ-ମାନଙ୍କରୁ ଟଙ୍କାସ୍ରୋତ ସବୁ ମୁହାଁଇ ଦିଲ୍ଲୀକୁ ଆଣିଲେଣି । ସେଠି ସବୁ ଠୁଳ କରି ପୁଣି ମୁହାଇଁ ଦିଆ ହେଉଚି ସବୁ ରାଜ୍ୟକୁ । ପୁଣି ରାଜ୍ୟରୁ ପ୍ରତ୍ୟେକ ଗାଁକୁ ସୁଅ ଚାଲିଛି । କେଉଁ କେଉଁ ରାଜ୍ୟର ଭଗୀରଥମାନେ ପୁଣି ସିଧାସଳଖ ବିଦେଶରୁ ସେ ସୁଅକୁ ନିଜ ନିଜ ରାଜ୍ୟକୁ ଆଣିବାକୁ ଚେଷ୍ଟା କରୁଛନ୍ତି । ଅନେକ କପଟି ମହାଦେବ ବା ଜାଦୁମୁନି ସେ ସୁଅକୁ ଜଟରେ ଛପାଇ ଦେଉଛନ୍ତି ବା ଚଳୁ କରି ନେଉଚନ୍ତି; କିନ୍ତୁ ସେଥିରେ କିଛି ଯାଏ ଆସେ ନାହିଁ । ସୁଅ ତ ମାଡ଼ି ଆସୁଛି, କିଏ କେତେ ଛପାଇ ରଖୁଛି, କିଏ କେତେ ଚଳୁ କରୁଚି କରୁ ! ଦେଖାଯିବ ପରେ ! କ୍ୟାପରୱା ।

ହେଲେ, ଗୋଲମାଲ ହେଲା, ଫାଇଦା ଉଠାଇ ନ ପାରିବା ଲୋକେ ଯେତେବେଳେ ହଠାତ୍ ଦେଶପ୍ରେମୀ, କର୍ମୀ ହୋଇ ଉଠିଲେ, ମୁଣ୍ଡରେ ଧଳା ଟୋପି ନାଇଲେ, କାନ୍ଧରୁ ମୁଣା ଝୁଲାଇଲେ ଓ ଆଣ୍ଠୁ ଉପରକୁ ମୋଟ ଧୋତି ପିନ୍ଧିଲେ । ନରପୁରର ବଟକୃଷ୍ଣ ବାବୁ ଏମିତି ବେଶ ବଦଳେଇଲେ । ସେ କଲକତାରେ ଝୋଟ କଳରେ କଅଣ କାମ୍ କରୁଥିଲେ । ଶାଗୁଣା ମଡ଼ା ଗନ୍ଧ ପାଇ ଛୁଟିଲାପରି ସେ କଲକତା ଛାଡ଼ି ଗାଁକୁ ଆସି ଆସ୍ଥାନ ଜମାଇଲେ । ନମେଷକେ ସେ ଅବସ୍ଥାଟା ହୃଦୟଙ୍ଗମ କଲେ ଯେ ଯେଉଁ ସୁଅ ହଲଦିଆକୁ ବୁଲାଇ ତା'ର ଗୋଟାଏ ଧାର ନରପୁରକୁ ଆଣିବାକୁ ହେଲେ ବେଶ୍ କିଛି ବୁଦ୍ଧି ଖରଚ କରିବାକୁ ପଡ଼ିବ ।

ତେଣୁ ସେ ପ୍ରଥମେ ସ୍ଥାପନ କଲେ 'ବଟ ମହାପୁରୁଷ ଉନ୍ନତି ସମିତି' । ସଭା ବସିଲା, ପଚାଶଖଣ୍ଡ ଗାଁର ଲୋକେ ସଭାରେ ଯୋଗ ଦେଲେ । ନିୟମ ହେଲା ପ୍ରତ୍ୟେକ ଗାଁବାଲା ମାସକୁ ଅଣାଏ ଚାନ୍ଦା ଦେବେ । ଯିଏ ବଟ ମହାପୁରୁଷଙ୍କ ସ୍ପେସିଆଲ୍ ପୂଜା କରାଇବ ସେ ଦୁଇଟଙ୍କା ଦେବ । ପ୍ରତ୍ୟେକ ଚୈତ୍ରରେ ବଟ ମହାପୁରୁଷଙ୍କ ନୂତନ କଳେବରବେଳେ ଯେଉଁ ହିମାଳୟ ପ୍ରମାଣ ପତର ଝଡ଼େ ତାକୁ ଆଉ ଧୋବଣୀ ପାଲୁଣୀମାନେ ମାଗଣା ନେଇ ପାରିବେ ନାହିଁ, ଠୋକେଇକୁ ଏକ ନୂଆପଇସା ମାସୁଲ ଦେବେ, ଇତ୍ୟାଦି । ବଟକୃଷ୍ଣ ସମିତିର ସେକ୍ରେଟେରି ହେଲେ । ଖୁବ୍ ଟଙ୍କା ଆଦାୟ ହେଲା । ବଟ ମହାପୁରୁଷଙ୍କ ମୂଳ ଚାରିପଟେ ପ୍ରକାଣ୍ଡ ଚଉତରା ଗଢ଼ା ହେଲା ଏବଂ ପ୍ରତ୍ୟେକ ଓହଳ ଚାରିପଟେ ବି ସାନ ସାନ ଚଉତରା ଗଢ଼ା ହେଲା । ତା ସାଙ୍ଗେ ସାଙ୍ଗେ ବଟକୃଷ୍ଣଙ୍କ ଆଶ୍ରମ ମଧ୍ୟ ପକା ହେଲା । ବଟକୃଷ୍ଣ ବଟ ମହାପୁରୁଷଙ୍କ ଆୟ ଆହୁରି ଏକ ଅଭିନବ ଉପାୟରେ ବଢ଼ାଇବାକୁ ଲାଗିଲେ । ଅହମ୍ମଦପୁରର

ଜାନ୍‌ମହମ୍ମଦ ହେଉଚନ୍ଦ୍ର ଗଣକବ । 'ଶାଶୁ-ବୋହୂ କଳି' 'କଅଁକଆଣୀ' ଆଦି କବିତା ଲେଖି ଛପାଇ ସେ ଗ୍ରାମେ ଗ୍ରାମେ ବୁଲି ବିକନ୍ତି । ଅନ୍ୟାବୋହୂ ଅନ୍ୟାକୁ ବିଷ ଦେଇ ମାରି ଗ୍ରାମ ପ୍ରଧାନ ସହିତ କଳିକଚା ପକେଇ ଯିବା କାହାଣୀ ସେ କବିତାରେ ଲେଖି ଛପାଇ ଗ୍ରାମେ ଗ୍ରାମେ ବୁଲି ପ୍ରଚାର କରିଥିଲେ । ସେ ବହି ତାଙ୍କର ଭାଗ୍ୟ କାଅଁତି ହୋଇଥିଲା, ପ୍ରତ୍ୟେକ ଗାଁର ବୋହୂମାନେ ତାକୁ କିଣି ପଢ଼ିଚନ୍ତି । ବଅଁକୃଷ୍ଣ ତାଙ୍କୁ ଧରିଲେ 'ବଅଁ ମହାପୁରୁଷ ମାହାତ୍ମ୍ୟ' ଲେଖି ପ୍ରଚାର କରିବାକୁ । 'ବଅଁ ମହାପୁରୁଷ ମାହାତ୍ମ୍ୟ' ଲେଖା ହେଲା, ସେଥିରେ ଭଣିତା ହେଲା 'ଦାନ ସେବକ ବଅଁକୃଷ୍ଣ' । ବଅଁ ମହାପୁରୁଷଙ୍କ ନାନା ଅଲୌକିକ କାହାଣୀ ଶୁଣି ଯାତ୍ରୀ ବଢ଼ିଲେ, ସେ ଦିଗରୁ ବେଶ୍ କିଛି ଅର୍ଥ ବଅଁକୃଷ୍ଣଙ୍କ ହାତପେଠ ହେଲା ଏବଂ ବଅଁ ମହାପୁରୁଷଙ୍କ ମାହାତ୍ମ୍ୟ ସହିତ ବଅଁକୃଷ୍ଣଙ୍କ ମାହାତ୍ମ୍ୟ ମଧ୍ୟ ପ୍ରଚାରିତ ହେଲା ।

ବଅଁକୃଷ୍ଣ ଅଙ୍କୁଳି ପ୍ରବେଶ କରାଇଲେ ପଞ୍ଚାୟତରେ ସାମାନ୍ୟ ମେମ୍ବରଟିଏ ହୋଇ । କିଛିଦିନ ପରେ ଜନରବ ହେଲା ଯେ ସରପଞ୍ଚଙ୍କ ବିରୁଦ୍ଧରେ ଅନାସ୍ଥା ପ୍ରସ୍ତାବ ଆସିବ । ସରପଞ୍ଚ ହେଉଚନ୍ତି ହଳଦିଆର ବଅଁକୁଳ । ତାଙ୍କ ଦୋଚାଳିର ମୁଣ୍ଡି ମରି ହୋଇ ନାହିଁ, ସେ ପ୍ରମାଦ ଗଣିଲେ । ବଅଁକୁଳ ମାମଲାବାଜ ଲୋକ । ସେ ଦାଉ ସାଧନ୍ତି ଆଇନ ଅଦାଲତ ଜରିଆରେ । ତାଙ୍କ ହାତ ମୁଠାରେ ଅନେକ ସାକ୍ଷୀ ଅଛନ୍ତି, ଯେଉଁମାନେ ଅଦାଲତରେ 'ନିଯ୍ୟମ କରୁଚି ଯାହା କହିବି ସତ କହିବି, କିଛି ମିଛ କହିବି ନାହିଁ, କିଛି ଲୁଚେଇବି ନାହିଁ' ଶପଥ ନେଲା ପରେ ମଧ୍ୟ 'ଆମେ କାହିଁକି ମିଛ କହିବୁ, ଆମେ ମିଛ କହିଲାବାଲା ନହୁଁ' ଯୋଡ଼ି ଦେଇ ଅନର୍ଗଳ ମିଛ କହିଯାଆନ୍ତି, ଆଉ କେଉଁରେ ଧରା ପଡିଲେ ମଧ୍ୟ ନିର୍ଲଜ ଭାବରେ

ମିଛ କହିଯାଆନ୍ତି ଓ ସାକ୍ଷ୍ୟ ଦେଇ ସାରିବା ପରେ ଦୁଇଟଙ୍କା ପାରି-ଶ୍ରମିକ ନେଇ ହୋଟେଲରେ ମାଗଣା ଖାଇ ଘରକୁ ଫେରନ୍ତି ।

"ଚନ୍ଦ୍ର ନ ଢାଙ୍କେ ମେଘାଚ୍ଛନ୍ନେ,
ମିଥ୍ୟା ବଚନେ ସତ୍ୟ ଯେହ୍ନେ ।"

ବଟୁକଙ୍କୁ ତେଣୁ ସମସ୍ତେ ଭୟ କରନ୍ତି । ପଞ୍ଚାୟତ ସଭା ବସିବା ଆଗରୁ ସେ ବଟକୃଷ୍ଣଙ୍କ ନାମରେ ନାରୀଧର୍ଷଣ, ଚୋରି, ଠକେଇ ଆଦି ପିଙ୍ଗଳକୋର୍ଟରେ ବଡ଼ ବଡ଼ ଦଫାରେ ଚାରି ପାଞ୍ଚଟା ମାମଲା ଯୋଡ଼ି ଦେଲେ । ବଟକୃଷ୍ଣ ବଟ ମହାପୁରୁଷଙ୍କ ପାଖରେ ଅଧିଆ ପଡ଼ିଲେ, ଆହୁରି ଜୋର ସୋରରେ 'ବଟ ମହାପୁରୁଷ ମାହାତ୍ମ୍ୟ' ପ୍ରଚାର ଚଳାଇଲେ । ବଟ ମହାପୁରୁଷଙ୍କ ପାଣ୍ଠିରୁ ମକଦ୍ଦମା ଖରଚ ଚଳେଇଲେ, ସାକ୍ଷୀ ଭଙ୍ଗେଇଲେ । ପଞ୍ଚାୟତ ସଭାରେ ବଟୁକ ହାରିଗଲେ, ବଟକୃଷ୍ଣ ସରପଞ୍ଚ ହେଲେ । ବଟକୃଷ୍ଣ କିନ୍ତୁ କହିଲେ ବଟ ମହାପୁରୁଷ ଜିଣିଲେ । ନରପୁର ଆଉ ହଳଦିଆ ଗାଁ ଭିତରେ ବିବାଦ ତେଜି ଉଠିଲା । ଖାଲି ସେତିକି ନୁହଁ, ସବୁ ଗାଁ ଭିତରେ ଫାଟ ଦିଶିଲା ।

ବଟୁକ ଏଥର ଭଲକରି ଅଣ୍ଟା ଭିଡ଼ିଲେ । ସେ ମଧ୍ୟ ଅନାସ୍ଥା ପ୍ରସ୍ତାବ ଆଣିବାପାଇଁ ଯୋଗାଡ଼ ଚଳାଇଲେ । ମେମ୍ବରମାନଙ୍କୁ ଟଙ୍କା ପଇସା ଦେଇ ହାତକରି ରାତାରାତି ଗୋଟାଏ ଟ୍ରକରେ ଭୁବନେଶ୍ୱର ନେଇ ମନ୍ତ୍ରୀଙ୍କ ପାଖରେ ଶପଥ କରାଇ ପୁଣି ଲିଙ୍ଗରାଜଙ୍କ ପାଖରେ ମହାପ୍ରସାଦ ଛୁଆଁଇ ଶପଥ କରାଇ ରାତି ନ ପାହୁଣୁ ଫେରି ଆସିଲେ । କିନ୍ତୁ ଲିଙ୍ଗରାଜଙ୍କ ପ୍ରଭାବ ନରପୁର ପର୍ଯ୍ୟନ୍ତ ପଡ଼େ ନାହିଁ ବୋଧହୁଏ । ଏଠି ବଟ ମହାପୁରୁଷ ସର୍ବେସର୍ବା । ଦାସକାଠିଆ ଦଳ, ପାଲାବାଲା, ଜାନ୍ ମହମ୍ମଦ ସମସ୍ତେ ଗାଁ ଗାଁ ବୁଲି ବଟ ମହାପୁରୁଷଙ୍କ ମାହାତ୍ମ୍ୟ ଓ ତା ସହିତ ବଟକୃଷ୍ଣଙ୍କ ମାହାତ୍ମ୍ୟ ପ୍ରଚାର ଚଳାଇଚନ୍ତି । ସେ ପ୍ରଚାର-

ପ୍ରାଚୀର ଭେଦ କରି ଲିଙ୍ଗରାଜ ପଶି ପାରିଲେ ନାହିଁ, କି ମନ୍ତ୍ରୀଙ୍କ ମନ୍ତ୍ରୀତ୍ୱ 'ମଧ୍ୟ କାଟୁ କଲାନାହିଁ । ବଟକୃଷ୍ଣ ବଟ ମହାପୁରୁଷଙ୍କ ମାହାତ୍ମ୍ୟ ପ୍ରଚାର କରି ବରଗଛ ସଙ୍କେତ ଧରି ପଞ୍ଚାୟତ ସମିତି ଚେୟାରମେନ୍ ପଦକୁ ଆଖୋଉ ଆଖୋଉ ପାଖେଇଲେଣି ।

ଏତେଦିନକେ ବଟୁକଙ୍କ ଚେତା ପଶିଲା । ସେ ବୁଝିଲେ ଯେ ପ୍ରଥମେ ବଟ ମହାପୁରୁଷଙ୍କ ମାହାତ୍ମ୍ୟ ଖର୍ବ କରିବାକୁ ହେବ ।

ଦିନେ ହଠାତ୍ ଦେଖାଗଲା ହଳଦିଆ ଗାଁ ମଶାଣିରେ ଏକ ବାବାଜି ଆସ୍ଥାନ ଜମାଇ ବସିଛନ୍ତି । ତାଙ୍କ ନାଁ ବଟିଆ ବାବାଜି । ପ୍ରଚାର ହୋଇଗଲା ବଟିଆ ବାବାଜି ଜଣେ ଭାରି କାଳିସାଧକ । ପ୍ରତି ଅମାବାସ୍ୟା ରାତିରେ ସେ ଶବ ସାଧନା କରନ୍ତି । ଝାଡ଼ ଫୁଙ୍କି ଜାଣିନ୍ତି ବି । ଆଉ ତାଙ୍କ ବଟୁଆରୁ ଟିକିଏ ଟିକିଏ ହୋମ ପାଉଁଶ ଦେଇ ସବୁ ରୋଗ ଭଲ କରି ଦେଇ ପାରନ୍ତି । ଅଳ୍ପଦିନ ଭିତରେ ପଚାଶି ଖଣ୍ଡ ଗାଁରେ ଏ ସମ୍ବାଦ ବିଜୁଳି ଭଳି ଖେଳିଗଲା । ଲୋକ-ସୁଅ ଲାଗିଲା ବଟିଆ ବାବାଜି ପାଖକୁ ।

କେତେକ ଦିନ ପରେ ଗାଁ ଗାଁରେ ଏକ ନୂଆ ଆତଙ୍କ ସୃଷ୍ଟି ହେଲା । ରାତି ଅଧରେ ଅନେକଙ୍କ ଘରେ ଟେକା ଭୁଷା ଧୂଆ ପଡ଼ିବାକୁ ଲାଗିଲା । କେଉଁଠୁ ପଡ଼ୁଛି କେହି ଧରି ପାରିଲେ ନାହିଁ । ଲୋକେ ବଟିଆ ବାବାଜିଙ୍କୁ ଧରିଲେ ଏହାର କାରଣ ଜାଣିବାକୁ ଓ ପ୍ରତିକାର କରିବାକୁ । ବଟିଆ ବାବାଜି ପୂଜା କଲେ । ପୂଜାରୁ ଉଠି ସେ କାରଣ ଜଣାଇଲେ । ଲୋକେ ଶୁଣି ଚାଟକା । କାରଣ କଣ ! କାରଣଟା ହେଉଛି ଏଇଆ, "ଆଜି ପର୍ଯ୍ୟନ୍ତ ପଚାଶ ଖଣ୍ଡ ଗାଁର ଭୂତମାନେ ବଟ ମହାପୁରୁଷଙ୍କ ଦେହରେ ଏକାନ୍ନବର୍ତ୍ତୀ ପରିବାର ପରି ରହି ଭୋଗ ଦଖଲ କରି ଆସୁଥିଲେ । ଏଥିକୁ ନରପୁରିଆ

ଭୂତମାନେ ଗୁଣ୍ଡା ଓ ଦୁଷ୍ଟ ପ୍ରକୃତିର ଓ ଦଙ୍ଗାବାଜ୍ ଓ ମାମଲାବାଜ ଥିବାରୁ ବେଆଇନଭାବେ ଦଳବଦ୍ଧ ହୋଇ ଏକାଏକା ବଟ ମହା-ପୁରୁଷଙ୍କୁ ଭୋଗ ଦଖଲ କରିବା କୁଇଚ୍ଛାରେ ଓ ଅହମ୍ମଦପୁରର ଖବସ୍ ମାନଙ୍କ କୁପରାମର୍ଶରେ ଅନ୍ୟାନ୍ୟ ଗ୍ରାମର ଭୂତମାନଙ୍କୁ ବଟ ମହାପୁରୁଷଙ୍କ ଦେହରୁ ବେଦଖଲ କରିବା ସତ୍ତ୍ୱେ ଅନ୍ୟାନ୍ୟ ଗ୍ରାମର ଭୂତମାନେ ଅନାଥା ହୋଇ ସ୍ଥାନ ଅଭାବରୁ ଉପଦ୍ରବ କରୁଅଛନ୍ତି ।” ଉପାୟ ? ପ୍ରତ୍ୟେକ ଗ୍ରାମରେ ବରଗଛ ରୋପି ଭୂତମାନଙ୍କୁ ରଖିବାକୁ ହେବ । ଠିକ୍ ଠିକ୍ । ସମସ୍ତଙ୍କ ମନକୁ କଥାଟା ପାଇଲା । ବଟୁକଙ୍କ ପ୍ରଧାନ ସାକ୍ଷୀ ଓ ସହକର୍ମୀ ଧୂଳିଆ ନଭୂତରେ ବଟୁକଙ୍କୁ ପଚାରିଲା, ଆଜ୍ଞା ନରପୁରିଆ ଭୂତମାନଙ୍କ ନାଁରେ ଗୋଟାଏ ୧୪୭, ୪୪୭, ୪୨୬, ୩୨୩, ୫୦୦, ୫୦୪, ୩୨୫, ୩୫୪, ୩୭୯ ଦଫା ମକଦ୍ଦମା ଯୋଡଦେଲେ କମିତି ହୁଅନ୍ତା ? ଆମ ଡାକ୍ତର ତ ଅଛନ୍ତି, ଡାକ୍ତର ମାଇନା କର ସାର୍ଟିଫିକେଟ ଦେବାକୁ ? ଖାଲି ମାଡରଙ୍ଗଟା ଯା ଗୋଳମାଳ କରି ଦିଅନ୍ତୁ, ତା ନ ହେଲେ ତ ଭଲ ସାର୍ଟିଫିକେଟ ଦିଅନ୍ତୁ । ମୁଁ ତ ଅଛି ସାକ୍ଷ୍ୟ ଦବାକୁ, ସାକ୍ଷୀ ଯୋଗାଡ଼ କରିବାକୁ । ବଟୁକ ରାଗିଯାଇ କହିଲେ, ଚୁପ୍ ଶଳା ।

କଥା ହେଲା ବଟିଆ ବାବାଜ ପ୍ରଥମେ ହଳଦିଆ ଗ୍ରାମରେ ବରଗଛ ରୋପିବେ, ହଳଦିଆ ଶ୍ମଶାନରେ । ଏ ବରଗଛ ନା ହେବ 'ବଟ ମହାରାଜ' । ଯୋଗାଡ଼ଯନ୍ତ୍ର ଚାଲିଲା । ବଟୁକ ଗଲେ ଗୟା ଅକ୍ଷୟବଟରୁ ଗୋଟିଏ ଡାଳ ଆଣିବାକୁ । ବଟକୃଷ୍ଣ ବୁଝିପାରିଲେ ବଟୁକଙ୍କ କାଇଦାଟା, ସେ ଲାଗିପଡିଲେ ତାକୁ ବ୍ୟର୍ଥ କରିବାକୁ । ତା କରିବାକୁ ବେଶୀ ଡେରି ଲାଗିଲା ନାହିଁ । ନରପୁରର ବଟୀ ବେଓ୍ୱା ଦି ଚାରି ରାତି ବଟିଆ ବାବାଜଙ୍କ ପାଖକୁ ଯିବା ଆସିବା କରିବା ପରେ ବଟିଆ ବାବାଜ ହଳଦିଆ ଛାଡ଼ି ଚାଲିଯାଇ ବଟୀ ବେଓ୍ୱା ଘରେ ଆଶ୍ରମ ଜମେଇଲେ ।

ବଇଁକ ଗସ୍ତାରୁ ଫେରି ଦେଖନ୍ତି ତ ଇସ୍ତେକାଣ୍ଡ । ଭକ୍ତଗୃଉଳ ବ୍ଲେକେଇ ରହିଲେ । ଗସ୍ତାରୁ ସେ ବରଗଛ ଗୃହ ଆଣି ପାରି ନ ଥିଲେ । ଲୋକେ ପଗୃରିବାରୁ କହିଲେ, ବାଣ୍ଠରେ ମୋତେ ସ୍ୱପ୍ନ ହେଲା ଯେ ବଣ୍ଠ ମହାପୁରୁଷଙ୍କ ଡ଼ାଳରେ ଗଛ ନ ହେଲେ ଭୂତମାନେ ଅନ୍ୟ କୌଣସି ବରଗଛରେ ରହିବେ ନାହିଁ, ଆଜ ପ୍ରତ୍ୟେକେ ଗାଁର ତ ଅଧିକାର ଅଛି ବଣ୍ଠ ମହାପୁରୁଷଙ୍କ ଦେହର ଡ଼ାଳ ନେବାକୁ, ତା'ଛଡ଼ା ସେ ଗଛ ମୋର, ଆଜକୁ ପାଞ୍ଚବର୍ଷ ହେବ ମୁଁ ସପନଙ୍କଠାରୁ ୪ ୫୦୦୯ ଜରସମନରେ ସେ ଜମି କବଲା କରି-ନେଇ ଖଜଣା ପ୍ରତିବର୍ଷ ଦେଇ ଅସି ପାଉତି ହାସଲ କରି ଆସୁଅଛି । ମୁଁ କିନ୍ତୁ ସେ ଜମି ଓ ଗଛ ପଚଶ ଖଣ୍ଡ ଗାଁକୁ ଦାନ କରୁଚି । ତୁମ୍ଭେମାନେ ସମସ୍ତେ ଯାଇ ଖଣ୍ଡେ ଖଣ୍ଡେ ଡ଼ାଳ ନେଇ ନିଜ ନିଜ ଗାଁରେ ପୋତି ଭୂତମାନଙ୍କଠାରୁ ଉଦ୍ଧାର ପାଅ । ଗାଁବାଲା-ମାନେ ବଇଁକ ପ୍ରଧାନଙ୍କ ମହାନ୍ ଦାନରେ ଚମତ୍କୃତ ହେଲେ, ତାଙ୍କ ପ୍ରସ୍ତାବଟା ସେମାନଙ୍କ ମନକୁ ପାଇଲା । କଥାଟା କିନ୍ତୁ ଗୁପ୍ତ ରହିଲା ।

ଦିନେ ଶ୍ୱେତ ଅଧରେ ବଣ୍ଠ ମହାପୁରୁଷଙ୍କ ଆସ୍ଥାନରେ ଦୁମ୍ ଦୁମ୍ ପାହାର ଶୁଣି ବଣ୍ଠକୃଷ୍ଣ ଦୌଡ଼ି ଯାଇ ଦେଖିଲେ ଯେ ହଳଦିଆର ଓ ଅନ୍ୟାନ୍ୟ ଗ୍ରାମର ଲୋକେ ବଣ୍ଠ ମହାପୁରୁଷଙ୍କ ଡ଼ାଳ କାଟୁଛନ୍ତି । ସାଙ୍ଗେ ସାଙ୍ଗେ ଖବରଟା ନରପୁର ଗାଁ ଯାକ ଖେଳିଗଲା । ମୁହୂର୍ତ୍ତକେ ନରପୁରିଆମାନେ ଲାଠି, ଟେଣ୍ଟା, କଟୁରି, କୁରାଢ଼ି ଆଦି ଧରି ଜମା ହୋଇଗଲେ । ସେ ପଟରୁ ମଧ୍ୟ ସେମିତି ଲୋକେ ଜମା ହୋଇଗଲେ । ମଡ଼ ମଡ଼ କରି ବଣ୍ଠ ମହାପୁରୁଷଙ୍କ ଗୋଟାଏ ବାହୁ ଛିଡ଼ି ପଡ଼ିଲା କୁରାଢ଼ି ଚୋଟରେ । ବଟେଶ୍ୱର ମହାଦେବଙ୍କ ମନ୍ଦିର ଭିତରେ ସେ ଶବ୍ଦ ପ୍ରତିଧ୍ୱନିତ ହୋଇ ଉଠିଲା, ସତେ କି ମହାକାଳ ଗର୍ଜି ଉଠିଲେ ।

ତା'ପରେ ଲାଗିଲା ଦୁଇଦଳଙ୍କ ଭିତରେ ପିଟାପିଟି । ବଟ ମହାପୁରୁଷ ବାରମ୍ବାର ଥରିବାକୁ ଲାଗିଲେ । କାଳ ଭୈରବୀ ଡାକ ଦେଲାପରି ବଟେଶ୍ୱରଙ୍କ ମନ୍ଦିର ଭିତରୁ ଖାଲି "ହୋ ହୋ" ଶବ୍ଦ ବାହାରୁଥାଏ । ଏହି ସମୟରେ ଅହମ୍ମଦପୁରର ପଠାଣ ଆଠ ଜଣ ଖଣ୍ଡା ବୁଲାଇ ବୁଲାଇ ଦୌଡ଼ି ଆସିଲେ । ବଟୁକ ସେମାନଙ୍କୁ ପଇସା ଦେଇ ଜାଗଡିଆର କରି ରଖିଥିଲେ । ଅହମ୍ମଦପୁରିଆଙ୍କ ରାଗ ଥିଲା ନରିପୁରିଆମାନଙ୍କ ଉପରେ, କାରଣ ବଟକୃଷ୍ଣଙ୍କ ଶିକ୍ଷାରେ ସେମାନେ ପଠାଣମାନଙ୍କୁ ବଟ ମହାପୁରୁଷଙ୍କ ପାଖରୁ ଭିନ୍ନ କରିଦେଇଥିଲେ । ପଠାଣମାନେ ଖଣ୍ଡା ଧରି ଦୌଡ଼ି ଆସୁଥିବାର ଦେଖି ଯେ ଯୁଆଡ଼େ ପଳେଇଲେ । ନିଜ ନିଜ ଭିତରେ ବୀରତ୍ୱ ଦେଖାଇବା କୁଆଡ଼େ ପଳେଇଲା ।

ଗଲାବେଳେ ଧୂଳିଆ ବଟୁକ ଶିକ୍ଷାମତେ ବଟ ମହାପୁରୁଷଙ୍କ ପାଦତଳେ ଅଣ୍ଡ କଟୁବିଷ ପୋତି ଦେଇଗଲା ।

ପରଦିନ ଦେଖାଗଲା ଆଠଜଣଙ୍କ ମୃତଦେହ ବଟ ମହାପୁରୁଷଙ୍କ ତଳେ ପଡିଛି ଆଉ ପନ୍ଦରଜଣ ସାଂଘାତିକ ଭାବରେ ଜଖମ ହୋଇ ପଡିଛନ୍ତି । ଯେଉଁମାନେ ଅପେକ୍ଷାକୃତ ଅଳ୍ପ ଜଖମ ହୋଇଥିଲେ ସେମାନେ କୌଣସିମତେ ପଳାଇ ପାରିଛନ୍ତି !

ପୁଲିସ୍ ଆସିଲା । ବଟ ମହାପୁରୁଷଙ୍କ ଆସ୍ଥାନ ଉପରେ ୧୪୪ ଧାରା ଜାରିହେଲା । ସବୁ ଗାଁରୁ ପ୍ରାୟ ଶହେ ସରିକି ଲୋକ ହାତକଡ଼ା ପିନ୍ଧି ଧରା ହୋଇଗଲେ । ବଟୁକ ଓ ବଟକୃଷ୍ଣ ମଧ୍ୟ ଧରା ହେଲେ । ଧୂଳିଆ ଭୂତମାନଙ୍କ ସ୍ୱପକ୍ଷରେ ଯେଉଁ ଦଫାମାନ ଯୋଡ଼ି ମକଦ୍ଦମା କରିବାକୁ ବଟୁକଙ୍କୁ ପରାମର୍ଶ ଦେଇଥିଲା, ସେ ଦଫାମାନଙ୍କରୁ ଅନେକ ଓ ତା ସହିତ ହତ୍ୟାପାଇଁ ୩୦୨ ଦଫା ଯୋଡା ହୋଇ ମକଦ୍ଦମା ଚାଲିଲା । ମଡ଼ ପଡିଥିବାର ଦେଖି ଶାଗୁଣା ବାଲୁଆ

କୁକୁରମାନେ ଯେମିତି ଗଧା ହୋଇ ପଡ଼ନ୍ତି, ସେମିତି ଟାଉଟର ଆଦିମାନେ ଗଦା ହୋଇପଡ଼ି ଟଙ୍କା ଶୋଷିବାକୁ ଲଗିଲେ। ବଟୁକ ଓ ବଟକୃଷ୍ଣଙ୍କ ଧନ ନିଆ ପୁଆଁରେ ଯିବାକୁ ଲଗିଲା।

ଏ ଘଟଣାର ଅଳ୍ପଦିନ ପରେ ବଟ ମହାପୁରୁଷ ଝାଉଁଳି ପଡ଼ିଲେ। ବିରାଟ ମହୀରୁହ ସତେ ଯେପରି ଧ୍ୟାନମଗ୍ନ। ଅତୀତର କଥା ମନେ ପକାଇ ସେ ବୋଧହୁଏ ଧ୍ୟାନମଗ୍ନ ଭବିଷ୍ୟତ୍ ଚିନ୍ତାରେ। ମହାକାଳ ମଧ୍ୟ ଲୋକମାନଙ୍କର କଲ୍ୟାଣପାଇଁ ବିଷମାନ କରିଥିଲେ, ତେଣୁ ବଟ ମହାପୁରୁଷ ମହାକାଳ ବଟେଶ୍ୱରଙ୍କୁ ମନେ ମନେ ପ୍ରଣାମକରି ମହାପ୍ରୟାଣ କଲେ। ନାରାୟଣ ପ୍ରାପ୍ତି ତ ନୁହଁ, ହତ୍ୟା! କିନ୍ତୁ ଗଛର କି ପ୍ରାଣ ଅଛି ଯେ ତାଙ୍କୁ ମାରିଲେ ମଣିଷ ତିଆରି ପିଙ୍ଗଲ କୋର୍ଡର ୩୦୨ ଦଫା ଲଗିବ, ଆହା ବୋଲିବାକୁ ମଧ୍ୟ କେହି ନାହିଁ।

ସରକାର ସେ ଗଛକୁ ନିଲମ କରାଇ ଦେଲେ। ନିଆପୁର, ହଳଦିଆ ଆଦି ଗ୍ରାମର ଲୋକମାନଙ୍କ କ୍ଷମତା ନାହିଁ ସେ ବିରାଟ ଗଛକୁ ନିଲମ ଧରିବାକୁ। ସବୁ ପଇସା ତ ନିଆଁ ପୁଆଁରେ ଯାଇଚି। ଅହମ୍ମଦପୁରର ପଠାଣମାନେ କିନ୍ତୁ ନିଲମ ଧରିଲେ, ବାକିତକ ଗାଁବାଲାମାନେ ଘୁଷ୍‌ଘାଷ୍ ଦେଇ ଟ୍ରେରେଇ ବୋହି ନେଇ ଜାଳିଲେ। ଦୁଇଦିନ ଭିତରେ ସବୁ ସଫା। ବଟ ମହାପୁରୁଷଙ୍କ ଆସ୍ଥାନ ଶୂନ୍‌ଶାନ୍। ଗୋଟାଏ ସଭ୍ୟତା ଗଲା, ଆଉ ଗୋଟିଏ ସଭ୍ୟତା ଆସିଗଲା। କିଛି ଡରିବାର ନାହିଁ। ମହାକାଳ ସଦା ଜାଗ୍ରତ।

ଆଜି ପର୍ଯ୍ୟନ୍ତ ବି ରାତିରେ ରାମଚନ୍ଦ୍ରଙ୍କୁ ଲୋକେ ସେଠି ବୁଲୁଥିବାର ଦେଖିଚନ୍ତି। ତାଙ୍କ କାଠଉ ଠକ୍ ଠକ୍ ଓ ଦୀର୍ଘନିଶ୍ୱାସ ପକାଇବାର ଶବ୍ଦ ଅନେକ ଶୁଣୁଚନ୍ତି।

—୦—

# ମରହଟ୍ଟୀ

(Sir Arther Conan-Doyle M. D. ଙ୍କର 'Behind the times' କ୍ଷୁଦ୍ର ଗଳ୍ପର ଅନୁବାଦ)

ଅନୁବାଦକ—ଜ୍ୟୋତିଚନ୍ଦ୍ର ମୋହନ ଜୋଆରଦାର

ଡାଃ ଜେମସ୍ ୱଇଣ୍ଟରଙ୍କ ସହିତ ମୋର ପ୍ରଥମ ସାକ୍ଷାତ ହୋଇଥିଲା ନାଟକୀୟ ପରିସ୍ଥିତି ମଧ୍ୟରେ । ଗୋଟିଏ ପୁରାତନ ଗ୍ରାମ୍ୟ ଗୃହରେ ରାତି ଦୁଇଟାବେଳେ ସେ ସାକ୍ଷାତ ଘଟିଥିଲା । ତାଙ୍କର ଦୁଗ୍ଧଧବଳ ଓ୍ୱେଷ୍ଟକୋଟକୁ ମୁଁ ଦୁଇଥର ପଦାଘାତ କରିଥିଲି ଏବଂ ଘୁଷି ମାରି ତାଙ୍କର ନାକଉପରୁ ସୁନା ଚଷମା ତଳେ ପକେଇ ଦେଇଥିଲି । ସେ ମଧ୍ୟ ଜଣେ ନାରୀ ସାହାଯ୍ୟରେ ଫ୍ଲ୍ୟାନେଲ୍ ପେଟିକୋଟ୍ ଦ୍ୱାରା ମୋର ବିଭତ୍ସ ଚିତ୍କାର ରୋଧ କରି ଗରମ ପାଣିରେ ମୋତେ ପକାଇ ଗାଧୋଇ ଦେଇଥିଲେ । ପରେ ଶୁଣିବାକୁ ପାଇଲି ମୋର ମା ମଧ୍ୟ ସେଠି ଥିଲେ ଏବଂ ସ୍ମିତହାସ୍ୟ କରି ଚୁପ୍ କରି କହିଥିଲେ, ମୋର ଫୁସ୍‌ଫୁସ୍‌ରେ ଯଥେଷ୍ଟ ଶକ୍ତି ଅଛି ଏଥିରେ ସନ୍ଦେହ ନାହିଁ । ଡାଃ ୱଇଣ୍ଟରଙ୍କ ଚେହେରା ସେତେବେଳେ କେମିତି ଥିଲା ମୋର ମନେ

ପଡ଼େ ନାହିଁ; ଅନ୍ୟାନ୍ୟ ନାନା ଚିନ୍ତାରେ ସେଆଡ଼େ ଦୃଷ୍ଟି ଦେବାର ମୋର ଅବକାଶ ନ ଥିଲା । କିନ୍ତୁ ମୋର ସେତେବେଳର ଚେହେରାର ସେ ଯେଉଁ ବର୍ଣ୍ଣନା ଦିଅନ୍ତି ତାହା ଆଦୌ ପ୍ରଶଂସାସୂଚକ ନୁହେଁ । ସଦ୍ୟଜାତ ଚଢେଇ ଛୁଆ ଭଳି ମଥାରେ ଦି ଚାରି କେରା ଛୁଙ୍ଗା ଛୁଙ୍ଗା ବାଳ, ରୋଷେଇ ପାଇଁ ପ୍ରସ୍ତୁତ ହଂସ ଭଳି ଶୁକୁଟା ଦେହ, ଗୋଡ ଦୁଇଟି ଧନୁ ଭଳି ବଙ୍କା ଏବଂ ପାଦ ଦୁଇଟି ଉଚରପଟକୁ—ମୋଟା-ମୋଟି ଏତିକି ତାଙ୍କର ମୋ ବିଷୟରେ ମନେ ପଡେ ।

ଏହା ପରେ ମନେ ରଖିବା ଭଳି ମୋ ଜୀବନରେ ଯାହା ଘଟିଥିଲା ତାହା କେବଳ ମଝିରେ ମଝିରେ ମୋ ଉପରେ ତାଙ୍କର ଆକ୍ରମଣ । ସେ ମୋତେ ମାଡ଼ିବସି ଟୀକା ଦେଲେ, ମୋର କଥ କାଟିଲେ ଏବଂ ମର୍ଦ୍ଦନ ପାଇଁ ପ୍ରଲେପ ଲଗାଇ ମୋ ଦେହରେ ଫୋଟକା ଜାତ କରାଇଲେ । ମୋର ଶାନ୍ତିମୟ ଜୀବନରେ ସେ ଥିଲେ ଏକମାତ୍ର ଭୟର କାଳା ଛାଇ । କିନ୍ତୁ ଦିନେ ସତେ ସତେ ମୁଁ ରୋଗାକ୍ରାନ୍ତ ହୋଇ ମାସ ମାସ ଧରି ମୋର ଛୋଟେଇ ଶଯ୍ୟାରେ ପଡ଼ି ରହିଲି । ସେତିକିବେଳେ ମୁଁ ଅନୁଭବ କଲି ଯେ ସେହି କଠିନ ମୁଖମଣ୍ଡଳ କୋମଳ ହୋଇପାରେ, ଗାଁ । ମୋଟା ଷ୍ଟିଆରି ସେଇ ଶବ୍ଦାୟମାନ ଜୋତା ହଳଟି ମଚ୍ ମଚ୍ ଶବ୍ଦରେ ଚାରିଆଡ଼ ମୁଖରିତ ନ କରି ମଧ୍ୟ ରୋଗୀର ଶଯ୍ୟା ନିକଟକୁ ଆସିପାରେ ଏବଂ ଶିଶୁ ସହିତ କଥା କହିବାବେଳେ ସେଇ ରୁକ୍ଷ କଣ୍ଠସ୍ୱର ନରମ ନମ୍ର ହୋଇପାରେ ।

ସେଦିନର ଶିଶୁ ଆଜି ଜଣେ ଡ଼ାକ୍ତର । କିନ୍ତୁ ଡାଃ ଉଇଣ୍ଟରଙ୍କର କୌଣସି ପରିବର୍ତ୍ତନ ନାହିଁ । ମୋର ହେଜ୍ଜୁ ହେବାଦିନରୁ ତାଙ୍କୁ ଯେମିତି ଦେଖିଛି ଆଜି ବି ଠିକ୍ ତାଙ୍କୁ ସେମିତି ଦେଖୁଛି । କେବଳ ମୁଣ୍ଡରେ ପାଚିଲା ବାଳର ସଂଖ୍ୟା ଟିକିଏ ବଢ଼ିଛି ଏବଂ ତାଙ୍କର

ବିରାଟ କାନ୍ଥ ଟିକିଏ ଲଇଁଯାଇଛି । ବର୍ତ୍ତମାନ ମଧ୍ୟ ସେ ସେମିତି ଦୀର୍ଘାକାର । ଟିକିଏ ଲଇଁ ଯାଇଥିବାରୁ ହୁଏତ ଦୁଇ ଇଞ୍ଚ କମି ଯାଇଥାଇ ପାରନ୍ତି । ବହୁବର୍ଷ ଧରି ରୋଗୀର ଶଯ୍ୟା ଉପରେ ଲଇଁ ଲଇଁ ତାଙ୍କର ବିଶାଳ ପୃଷ୍ଠଟି ସେହିପରି ଅବସ୍ଥାରେ ରହିଯାଇଛି । ଶୀତର ଝଡ ବୃଷ୍ଟି ନ ମାନି ଦୀର୍ଘ ଗ୍ରାମପଥ ଅତିକ୍ରମ କରି ରୋଗୀ ଦେଖିଯିବାର ପ୍ରମାଣ ମଧ୍ୟ ସେ ମୁହଁରୁ ମିଳେ । ଟିକିଏ ଦୂରରୁ ଦେଖିଲେ ମୁହଁଟି ତାଙ୍କର ମସୃଣ ମନେ ହୁଏ କିନ୍ତୁ ନିକଟକୁ ଗଲେ ମୁହଁରେ ଅସଂଖ୍ୟ ସରୁ ରେଖା ପରିସ୍ଫୁଟ ହୋଇ ଉଠେ । ସାଧାରଣତଃ ସେ ସରୁ ରେଖାଗୁଡ଼ିକ ନଜରରେ ପଡ଼େ ନାହିଁ କିନ୍ତୁ ସେ ଯେତେବେଳେ ହସନ୍ତି ମୁହଁଟି ଯେପରି କାଚଭଳି ଶତଖଣ୍ଡ ହୋଇ ଫାଟିଯାଏ । ସେତେବେଳେ ଜଣାଯାଏ ଯେ ତାଙ୍କର ବୟସ ବେଶୀ ଜଣାଗଲେ ମଧ୍ୟ ଯେତେ ମନେହୁଏ ତାଠୁ ଅବଶ୍ୟ ଆହୁରି ବେଶୀ ।

ତାଙ୍କର ପ୍ରକୃତ ବୟସ ମୁଁ କେବେହେଁ ଜାଣି ପାରି ନାହିଁ । ଅନେକ ଥର ଜାଣିବାକୁ ଚେଷ୍ଟା କରିଛି କିନ୍ତୁ ଚତୁର୍ଥ ଜର୍ଜ ଏପରିକି ରିଜେନ୍‌ସି ସମୟ ପର୍ଯ୍ୟନ୍ତ ତାଙ୍କର ଅସ୍ତିତ୍ୱର ଅନୁଧାବନ କରି ମଧ୍ୟ ଠିକ୍ ଆରମ୍ଭ କେଉଁଠି ଧରି ପାରି ନାହିଁ । ବହୁବର୍ଷ ପୂର୍ବରେ ନିଶ୍ଚୟ ତାଙ୍କର ମନର ଦୁଆର ବହିର୍ଜଗତ ପାଇଁ ଉନ୍ମୁକ୍ତ ଥିଲା କିନ୍ତୁ ସେ ଦୁଆର ଯେବେ ରୁଦ୍ଧ ହୋଇ ଯାଇଥିଲା ତାହା ମଧ୍ୟ ବହୁବର୍ଷ ପୂର୍ବର ଘଟଣା । ଦୃଷ୍ଟାନ୍ତ ସ୍ୱରୂପ, ଆଧୁନିକ ଯୁଗର ରାଜନୀତି ବିଷୟରେ ସେ କୌଣସି ଆଗ୍ରହ ପୋଷଣ କରନ୍ତି ନାହିଁ । ଅଥଚ ଯେଉଁ ସବୁ ବିଷୟ ବର୍ତ୍ତମାନ ପ୍ରାୟ ପ୍ରାଗୈତିହାସିକ ସ୍ତରକୁ ଗଲଣି ସେ ସବୁ ବିଷୟର ଆଲୋଚନାରେ ସେ ମାତି ଉଠନ୍ତି । ପ୍ରଥମ ରିଫର୍ମ ବିଲ୍ ବିଷୟ ଆଲୋଚିତ ହେଉଥିବା ସମୟରେ ସେ

କେବଳ ମସ୍ତକ ସଞ୍ଚାଳନ ଦ୍ୱାରା ତାହାର ସମୀଚୀନତା ବିଷୟରେ ସେ ଗମ୍ଭୀର ସନ୍ଦେହ ପ୍ରକାଶ କରନ୍ତି । ଗୋଟିଏ ଗିଲାସ ପାନ କରିବା ପରେ ତାଙ୍କର ମିଜାଜଟା ଯେତେବେଳେ ଟିକିଏ ଉଗ୍ର ସୁରରେ ବନ୍ଧା ହୋଇଯାଏ ସେତେବେଳେ ରବର୍ଟ୍ ଗିଲ୍ ଏବଂ ତାଙ୍କର ଶସ୍ୟ ଆଇନ ବର୍ଜନ ବିଷୟରେ ତାଙ୍କ ମୁହଁରୁ ମୁଁ ଅନର୍ଗଳ କଡ଼ା ସମାଲୋଚନା ଶୁଣିଚି । ତାଙ୍କ ମତରେ ପିଲ୍‌ଙ୍କ ମୃତ୍ୟୁ ପରେ ଇଂଲଣ୍ଡର ଇତିହାସର ପରିସମାପ୍ତି ଘଟିଚି, ତା ପରେ ଯାହା ଘଟିଚି ସେଗୁଡ଼ିକ ବିଶେଷ ଉଲ୍ଲେଖ ଯୋଗ୍ୟ ନୁହେଁ । ସେ ଯେ ବାସ୍ତବିକ୍ ବିଗତଯୁଗର ଗୋଟିଏ ସଚଳ ନିଦର୍ଶନ ତାହା ମୁଁ ସମ୍ୟକ୍ ଉପଲବ୍ଧି କଲି ନିଜେ ଡାକ୍ତର ହେବା ପରେ । ଯେଉଁ ପଦ୍ଧତିରେ ସେ ଡାକ୍ତରି ଶିକ୍ଷା ପାଇଥିଲେ ତାହା କେବଳ ଲୋପ ପାଇ ଯାଇନାହିଁ । ଲୋକେ ସେ କଥା ଏକଦମ୍ ଭୁଲିଯାଇ ଅଛନ୍ତି । ଉକ୍ତ ପଦ୍ଧତି ଅନୁସାରେ ଡାକ୍ତରୀ ଛାତ୍ରମାନଙ୍କୁ ଜଣେ ଅସ୍ତ୍ର ଚିକିତ୍ସକଙ୍କ ନିକଟରେ ଶିକ୍ଷାନବିସ୍ କରିବାକୁ ପଡ଼ୁଥିଲା, ଶରୀର ସ୍ଥାନ (Anatomy) ର ଜ୍ଞାନ ପାଇଁ କବରରୁ ଶବ ଚୋରି କରିବାକୁ ପଡ଼ୁଥିଲା । ଡାକ୍ତରୀ ବିଜ୍ଞାନ ଓ ବ୍ୟବସାୟ ବିଷୟରେ ତାଙ୍କର ମତାମତ ତାଙ୍କର ରାଜନୀତି ମତ ଅପେକ୍ଷା ଆହୁରି ପ୍ରଗତି ବିମୁଖ । ଗତ ପଚିଶ ବର୍ଷ ଭିତରେ ସେ ଜ୍ଞାନ ଆହରଣ କରିଛନ୍ତି ଅଳ୍ପ ଏବଂ ଭୁଲିଛନ୍ତି ଆହୁରି ଅଳ୍ପ । ତାଙ୍କ ଯୌବନାବସ୍ଥାରେ ଗୋବୀଜ ଟୀକାର ପ୍ରଚଳନ ଥିଲେହେଁ, ମୋର ମନେ ହୁଏ, ଗୋରୁ ଦେହରୁ ରୋଗର ବୀଜ ଆହରଣ କରିବାଠୁଁ ଅନ୍ୟ ଉପାୟରେ ତାହା ଆହରଣ କରିବାର ସେ ପକ୍ଷପାତୀ । ଅସ୍ତ୍ରୋପଚାରର ସମୟରେ ଯଥେଚ୍ଛା ରକ୍ତ ନିଷ୍କାସନରେ ତାଙ୍କର ଆପତ୍ତି ନାହିଁ କିନ୍ତୁ ଲୋକେ ଏହି ପ୍ରଚଳନ ପନ୍ଥାର ବିରୁଦ୍ଧବାଦୀ ହୋଇ ଉଠିବାରୁ ସେ ଟିକିଏ

ସାବଧାନ ହେଲେ । କ୍ଲୋରୋଫର୍ମକୁ ସେ ଗୋଟିଏ ବିପଜ୍ଜନକ ଆବିଷ୍କାର ମଣନ୍ତି, ଏହାର ନା ଶୁଣିବା ମାତ୍ରେ ସେ ଜିଭ ଓ ତାଳୁ ସାହାଯ୍ୟରେ ଗୋଟାଏ କ୍ଷୋଭ ସୂଚକ ଶବ୍ଦ କରନ୍ତି । ଲେନେକ ବିଷୟରେ ସେ ଅଦ୍ଭୁତ ମତ ପ୍ରକାଶ କରିବାର ଏବଂ ଷ୍ଟେଥୋ-ସ୍କୋପକୁ ଗୋଟିଏ ନୂଆ ଫରାସୀ ଖେଳଣା ଆଖ୍ୟା ଦେବାର ମଧ୍ୟ ମୁଁ ତାଙ୍କ ମୁହଁରୁ ଶୁଣିଛି । ତାଙ୍କର ରୋଗୀମାନଙ୍କର ଇଚ୍ଛାର ସମ୍ମାନ ରଖିବା ପାଇଁ ଅବଶ୍ୟ ସେ ତାଙ୍କର ଷ୍ଟେଥୋକୁ ସାଙ୍ଗରେ ନେଇ ରୋଗୀ ଦେଖି ବୁଲନ୍ତି କିନ୍ତୁ ସେ କାଲ ଥିବାରୁ ଏହା ବ୍ୟବହାର କରିବା ନ କରିବା ତାଙ୍କ ପକ୍ଷରେ ସମାନ ।

କର୍ତ୍ତବ୍ୟ ଅନୁରୋଧରେ ସେ ତାଙ୍କର ଡାକ୍ତରୀ ସାପ୍ତାହିକ ପତ୍ରିକା ନିୟମିତ ପଢ଼ିଯାଆନ୍ତି । ଆଧୁନିକ ଡ଼ାକ୍ତରୀ ବିଜ୍ଞାନର ପ୍ରଗତି ବିଷୟରେ ତେଣୁ ତାଙ୍କର ଗୋଟାଏ ସାଧାରଣ ଜ୍ଞାନ ଅଛି । କିନ୍ତୁ ଆଧୁନିକ ଡାକ୍ତରୀ ବିଜ୍ଞାନକୁ ସେ ଗୋଟାଏ ବିରାଟ ହାସ୍ୟକର ପରୀକ୍ଷା ବୋଲି ମଣନ୍ତି । ସବୁ ରୋଗର ମୂଳ କାରଣ ବୀଜାଣୁ ଏହି ମତ ଯେତେବେଳେ ପ୍ରଥମେ ପ୍ରଚ୍ଛରିତ ହେଲା ସେତେବେଳେ ସେ ଅନେକ ଦିନ ପର୍ଯ୍ୟନ୍ତ ହସିଥିଲେ । ରୋଗୀ ଦେଖିବା ସମୟରେ ତାଙ୍କର ଗୋଟିଏ ପ୍ରିୟ କୌତୁକ ଥିଲା, "କବାଟ ଝରକା ଲଗାଇ ଦିଅ, ବୀଜାଣୁ ପଶି ଆସିବେଟି !" ଡାର୍‌ଉଇନଙ୍କ ମତବାଦ ଶୁଣି ସେ କହିଲେ, ଏ ଯୁଗର ଏହା ଗୋଟିଏ ଚୂଡ଼ାନ୍ତ କୌତୁକ । 'ପିଲାଟୁଆ ଧାଈ କୋଳରେ ଏବଂ ପିତା ପ୍ରପିତାମହ ଗଛଉପରେ' ଏହା କହି ସେ ହସି ଗଡ଼ି ଯାଉଥିଲେ, ଆଖିରୁ ତାଙ୍କର ପାଣି ବାହାରି ପଡୁଥିଲା ।

ପ୍ରଚଳିତ ପ୍ରଥାର ଏତେ ପଛରେ ସେ ପଡ଼ିଥାନ୍ତି ଯେ ସମୟ ସମୟରେ ସେ ସମସ୍ତଙ୍କଠାରୁ ବେଶି ଆଧୁନିକ ମନେ ହୁଅନ୍ତି,

କାରଣ ସବୁ ଜିନିଷ ଭଳି ପ୍ରଥା ବା ଚଳଣି ମଧ୍ୟ ନିତ୍ୟ ପରିବର୍ତ୍ତନ । ଏଥିରେ ସେ ନିଜେ ଆଶ୍ଚର୍ଯ୍ୟ ହୋଇ ଯାଆନ୍ତି । ଉଦାହରଣ ସ୍ୱରୂପ ଖାଦ୍ୟ ନିୟନ୍ତ୍ରଣ ଦ୍ୱାରା ଚିକିତ୍ସା କରିବାର ପନ୍ଥା ଧରନ୍ତୁ । ତାଙ୍କର ଯୁବା ଅବସ୍ଥାରେ ଏହାର ଚଳଣି ଖୁବ୍ ଥିଲା, ଏ ବିଷୟରେ ତାଙ୍କର ଯେପରି ବ୍ୟାବହାରିକ ଜ୍ଞାନ ଆଉ କାହାର ମୁଁ ସେପରି ଦେଖିନାହିଁ । ସଂବାହନ ବା ମେସେଜିଂ ଯେତେବେଳେ ଆମେ ପ୍ରଥମେ ଦେଖିଲୁ ସେତେବେଳେ ଦେଖିଲୁ ଏହା ସହିତ ସେ ସୁପରିଚିତ । ତାଙ୍କର ଡାକ୍ତରୀ ପାସ୍ କରିବା ସମୟରେ ଡାକ୍ତରୀ ଯନ୍ତ୍ରପାତି ଆଦିମ ଅବସ୍ଥାରେ ଥିଲା । ସେତେବେଳେ ଡାକ୍ତରମାନେ ନିଜର ଅଙ୍ଗୁଳି ଉପରେ ବେଶି ନିର୍ଭର କରିବାକୁ ଶିକ୍ଷା କରୁଥିଲେ । ତାଙ୍କର ନିଜ ହାତଟି ଅସ୍ତ୍ର ଚିକିତ୍ସା ପାଇଁ ଗୋଟିଏ ଆଦର୍ଶ ହାତ । ପେଶୀଯୁକ୍ତ ହାତର ଲମ୍ବା ଆଙ୍ଗୁଳିଗୁଡ଼ିକ କ୍ରମଶଃ ସରୁ ହୋଇଯାଇଛି ଏବଂ 'ପ୍ରତ୍ୟେକ ଅଙ୍ଗୁଳି ଅଗରେ ଗୋଟିଏ ଆଖି' । ଡାଃ ପିଟାର୍ସନ ଓ ମୁଁ ସାର୍ଜନ ବାର୍ଓ୍ୱେଲ୍‌ଙ୍କ ପିତ୍ତସ୍ଥଳୀରୁ ପଥର ବାହାର କରିବା ପାଇଁ ଅସ୍ତ୍ରୋପଚାର କରିସାରି ପଥରଟି ଦରିଣ୍ଡି ପାଇଲୁ ନାହିଁ । ସେତେବେଳେ ଆମର ମନର ଅବସ୍ଥା ଭୁଲିବାର ନୁହେଁ । ସେ ଗୋଟାଏ ଭୟଙ୍କର ମୁହୂର୍ତ୍ତ । ଆମର ଦୁଇଜଣଙ୍କର ଡାକ୍ତରୀ ଜୀବନ ସଙ୍କଟାପନ୍ନ ହୋଇ ଉଠିଥିଲା । କେବଳ ଭଦ୍ରତା ଖାତିରରେ ଆମେ ଦୁହେଁ ଡାଃ ଉଇଣ୍ଟରଙ୍କୁ ସେଠାରେ ଉପସ୍ଥିତ ଥିବାକୁ ଅନୁରୋଧ କରିଥିଲୁ । କିନ୍ତୁ ଶେଷରେ ସେହି କ୍ଷତ ମୁହଁରେ ତାଙ୍କର ଲମ୍ବା ଅଙ୍ଗୁଳି ପ୍ରବେଶ କରାଇ ଦେଲେ । ସେତେବେଳକାର ମାନସିକ ଉତ୍ତେଜନାବଶତଃ ଆମର ମନେ ହେଲା, ତାଙ୍କର ପ୍ରତ୍ୟେକ ଆଙ୍ଗୁଳିଗୁଡ଼ିକ ନ'ଇଞ୍ଚ ଲମ୍ବା । ବନଶୀ କଣ୍ଟା ଅଗରେ ମାଛ ଧରିବା ଭଳି ସେ ତାଙ୍କର ଅଙ୍ଗୁଳି

ଅଗରେ ପଥରଟି ସୁନ୍ଦରଭାବରେ ବାନ୍ଧାରକରି ଆଣିଲେ ଏବଂ ହସି ହସି କହିଲେ 'କୋଟ ପକେଟରେ ଗୋଟିଏ ଗୋଡ଼ି ନେଇ ଆସିଥିବା ଭଲ, କିନ୍ତୁ ତୁମେ ଆଜିକାଲିକାର ଯୁବକମାନେ ତ ଏ ସବୁର ଉପରେ ।'

ଆମେ ତାଙ୍କୁ ବ୍ରିଟିଶ ମେଡ଼ିକାଲ୍ କାଉନ୍‌ସିଲ୍‌ର ସ୍ଥାନୀୟ ଶାଖାର ସଭାପତି କରିଥିଲୁ । କିନ୍ତୁ ସଭାର ପ୍ରଥମ ଅଧିବେଶନ ପରେ ସେ ସେଥିରୁ ଇସ୍ତଫା ଦେଲେ । କହିଲେ 'ଆଜିକାଲିର ଟୋକାମାନେ ବହୁତ କଥା ଜାଣନ୍ତି । ଅନେକ ସମୟରେ ସେ-ମାନଙ୍କ କଥା ମୁଁ ବୁଝିପାରେ ନାହିଁ ।' କିନ୍ତୁ ତାହାହେଲେ କଅଣ ହେବ, ତାଙ୍କର ରୋଗୀମାନେ ନିର୍ବିବାଦରେ ଆରୋଗ୍ୟଲାଭ କରନ୍ତି ତାଙ୍କର ଚିକିତ୍ସାରେ । ସେ ସେଇ ଯାଦୁମନ୍ତ୍ରର ଅଧିକାରୀ ଥିଲେ ଯାହାର ଅନ୍ୟ ନାମ ହାତ ଯଶ, ଯାହାର କୌଣସି ବ୍ୟାଖ୍ୟା ବା ବିଶ୍ଳେଷଣ ଅସମ୍ଭବ । ସେ ଥରେ ଆସି ଦେଖିଗଲା ମାତ୍ରେ ରୋଗୀ-ମାନଙ୍କ ମନରେ ଓ ଶରୀରରେ ଜୀବନୀ ଶକ୍ତି ଓ ଆଶା ସଞ୍ଚରି ଉଠେ । ଘରେ ସାମାନ୍ୟ ଟିକିଏ ଧୂଳିମଳି ଯେପରି ନିପୁଣା ଗୃହିଣୀ-ମାନଙ୍କୁ ଅସହ୍ୟ ବୋଧହୁଏ, ରୋଗ ଦେଖିଲେ ଡ଼ାଃ ଇଉଣ୍ଟରଙ୍କୁ ସେହିପରି ମନେ ହୁଏ । 'ନା, ନା, ଏମିତି କଲେ ଚଳିବ ନାହିଁ' କହି ସେ ତାଙ୍କର ରୋଗୀ ତାଲିକାରେ ଆଉ ଗୋଟିଏ ନାମ ଲେଖି ରଖନ୍ତି । 'ହୁସ୍ ହୁସ୍ ଯା' କହି ଆମେ ଯେପରି ଅଗଣାରୁ କାଉ ଉଡ଼ାଇଦେଉ ସେ ସେହିପରି ମୃତ୍ୟୁକୁ ହତାପାରି କରିଦେବାକୁ ଚାହାନ୍ତି । କିନ୍ତୁ ମୃତ୍ୟୁ ଯେତେବେଳେ ଯିବାକୁ ଅମଙ୍ଗ ହୁଏ, ଯେତେବେଳେ ରୋଗୀର ଧମଣୀରେ କ୍ରମେ ରକ୍ତର ବେଗ କ୍ଷୀଣରୁ କ୍ଷୀଣତର ହୋଇ ଆସୁଥାଏ, ଆଖି କ୍ରମେ ଜ୍ୟୋତିହୀନ ହୋଇ ଯାଉଥାଏ ସେତେବେଳେ ଡ଼ାଃ ଉଇଣ୍ଟରଙ୍କର ସବୁ ଔଷଧପତ୍ରଠାରୁ ସେ ନିଜେ ରୋଗୀର ବେଶୀ ଉପକାରରେ ଲାଗନ୍ତି । ଇହଲୋକ ଓ

ପରଲୋକର ଏହି ଭୟାବହ ସନ୍ଧିସ୍ଥଳ ପାରହେବା ମୁହୂର୍ତ୍ତରେ ରୋଗୀ ଯେପରି ଡାଃ ଉଇଣ୍ଟରଙ୍କର ବିଶାଳ କର୍ମଠ ଦେହରୁ ସାହାସ ସଞ୍ଚୟ କରିନିଏ । ବହୁ ରୋଗ ଯନ୍ତ୍ରଣା ସହି ସହି ଶେଷରେ ଯେଉଁମାନେ ଅଜଣା ଉଦ୍ଦେଶ୍ୟରେ ଯାତ୍ରା କରିଛନ୍ତି, ସେମାନଙ୍କ ମଧ୍ୟରୁ ଅନେକ ସେଇ ରେଖାଙ୍କିତ ସଦୟ ମୁଖମଣ୍ଡଳର ସ୍ମୃତି ଇହ ଜଗତର ଶେଷ ସ୍ମୃତି ସ୍ୱରୂପ ସାଙ୍ଗରେ ନେଇଯାଇଅଛନ୍ତି ।

ଡାଃ ପିଟର୍ସନ୍ ଓ ମୁଁ ଯେତେବେଳେ ସେହି ଅଞ୍ଚଳରେ ପ୍ରଥମେ ଡାକ୍ତରୀ ଆରମ୍ଭ କଲୁ ସେତେବେଳେ ଆମେ ଯୁବକ । କାମରେ ଆମର ଅସୀମ ଉତ୍ସାହ । ଚିକିତ୍ସା ବିଜ୍ଞାନର ଅଗ୍ରଗତି ବିଷୟରେ ଆମର ଜ୍ଞାନକୁ ଆମେ କେବେ ପଛେଇ ଯିବାକୁ ଦେଉ ନ ଥାଉ । ବୃଦ୍ଧ ଡାଃ ଉଇଣ୍ଟର ଆମକୁ ସାଦର ଅଭ୍ୟର୍ଥନା ଜଣାଇଲେ । ଆମେ ତାଙ୍କର ରୋଗୀ ସଂଖ୍ୟା କିଛି କମାଇ ପାରିଲେ ସେ ସତେ ସୁଖୀ ହୁଅନ୍ତେ କିନ୍ତୁ ରୋଗୀମାନଙ୍କର ଗୋଟାଏ ବଡ଼ ଦୋଷ ସେମାନେ ସେମାନଙ୍କ ମିଜାଜ୍ ଅନୁସାରେ ଚାଲନ୍ତି । ଫଳତଃ ଆମେ ଆମର ଆଧୁନିକ ଯନ୍ତ୍ରପାତି, ଔଷଧ ଓ ଜ୍ଞାନ ସତ୍ତ୍ୱେ ଅବହେଳିତ ରହିଲୁ ଏବଂ ବୃଦ୍ଧ ଡାକ୍ତର ଅଞ୍ଚଳଟିଯାକ ତାଙ୍କର ମାନ୍ଧାତାଯୁଗର ଡାଲଚିନିର ଜୁଲାପ ଓ ପାରଦସଙ୍ଘଟିତ ବିରେଚକ ଦେଇ ବୁଲିଲେ । ବୃଦ୍ଧ ଡାକ୍ତରଙ୍କ ପ୍ରତି ଆମର ଯଥେଷ୍ଟ ଶ୍ରଦ୍ଧା ଥିଲା କିନ୍ତୁ ତାଙ୍କର ଏ ପ୍ରକାର ଶୋଚନୀୟ ଅବିବେଚନା ବିଷୟରେ ନିଜ ନିଜ ଭିତରେ କଟୂମନ୍ତବ୍ୟ ନ କରି ରହି ପାରୁ ନ ଥିଲୁ । କେବେ ପିଟର୍ସନ୍ କହିଲେ 'ଗରିବଙ୍କ ପାଇଁ ହୁଏତ ତାହା ଯଥେଷ୍ଟ, କିନ୍ତୁ ଶିକ୍ଷିତ ଶ୍ରେଣୀ ଅନ୍ତତଃ ଏତିକି ଦାବୀ କରି ପାରନ୍ତି ଯେ ତାଙ୍କର ଚିକିତ୍ସକ ସୁସ୍ଥ ଓ ଅସୁସ୍ଥ ଫୁସ୍‌ଫୁସ୍‌ର ଶବ୍ଦ ଭିତରେ ପାର୍ଥକ୍ୟ ବୁଝି ପାରୁଥିବେ । ସହାନୁଭୂତିଶୀଳମନ ଡାକ୍ତର ପକ୍ଷରେ ଯଥେଷ୍ଟ ନୁହେଁ, ବିଚାରଶୀଳ ମନ ଲୋଡ଼ା ।

ଏହାର ଅଳ୍ପଦିନ ପରେ ସେ ଅଞ୍ଚଳରେ ଫ୍ଲୁ (ଇନ୍‌ଫ୍ଲୁଏନ୍‌ଜା) ସଂହାମକ ରୂପେ ବ୍ୟାପିଗଲା । ଖଟି ଖଟି ଆମର ପ୍ରାଣ କଣ୍ଠାଗତ ହେବାକୁ ବସିଲା । ଦିନେ ସକାଳେ ମୁଁ ରୋଗୀ ଦେଖିବାକୁ ବାହାରିବା ସମୟରେ ବାଟରେ ପିଟାର୍ସନଙ୍କୁ ଭେଟିଲି । ମୁହଁଟି ତାର ଶେତା ପଡ଼ିଯାଇଥାଏ, ଆଖି ତ ଗାଲ ଭିତରକୁ ପଶି ଯାଇଥାଏ । ମୋତେ ଦେଖି ସେ ମଧ୍ୟ ମୋ ବିଷୟରେ ସେହିପରି କହିଲା । ବାସ୍ତବିକ୍ ସେ ଦିନ ମୋ ଶରୀରଟା ଆଦୌ ଭଲ ଲାଗୁ ନ ଥାଏ । ସେ ଦିନ ଉପରଓଳିଟି ଯାକ ମୁଁ ଆରାମଚୌକିରେ ପଡ଼ି ରହିଲି । ଅସହ୍ୟ ଯନ୍ତ୍ରଣାରେ ମୁଣ୍ଡ ଫାଟି ଯାଉଥାଏ । ଦେହର ପ୍ରତ୍ୟେକ ଗଣ୍ଠିରେ ପରାସ୍ତ । ସନ୍ଧ୍ୟାବେଳକୁ ନିଶ୍ଚିତ ଭାବରେ ଜାଣିଲି ଯେ ଫ୍ଲୁ ମୋତେ ଆକ୍ରମଣ କରିଚ । ଅତିଶୀଘ୍ର ଡ଼ାକ୍ତରଙ୍କୁ ଦେଖାଇବା ପ୍ରୟୋଜନ । ପିଟାର୍ସନ କଥା ସ୍ୱଭାବତଃ ପ୍ରଥମେ ମନକୁ ଆସିଲା କିନ୍ତୁ କେଜାଣି କାହିଁକି ତା କଥା ମନେ ପଡ଼ିବା ମାତ୍ରକେ ଗୋଟିଏ ବିତୃଷ୍ଣା ଜାତ ହେଲା । ତା'ର ହୃଦୟହୀନ ଦୋଷଦର୍ଶୀ ଭାବଭଙ୍ଗୀ, ଅସରନ୍ତ ପ୍ରଶ୍ନ ତାଣ୍ଡବ, ସୂକ୍ଷ୍ମାତିସୂକ୍ଷ୍ମ ପରୀକ୍ଷା ଓ ବିଶ୍ଳେଷଣ ଏବଂ ସମସ୍ତ ଗୁପ୍ତ ପିଠିରେ ଶବ୍ଦାୟମାନ ଅଙ୍ଗୁଳିର ସ୍ପର୍ଶ ସବୁ ମୋ ଆଖି ଆଗରେ ଭାସିଗଲା । ଟିକିଏ ଆରାମ, ବିପଦ ଆଶ୍ୱାସବାଣୀ ମୋ ମନ ଲୋଡ଼ୁଥିଲା ।

ମୋର ହାଉସ୍‌କିପରଙ୍କୁ ଡାକି ମୁଁ କହିଲି 'ଟିକିଏ ଡାଃ ଉଇଣ୍ଟରଙ୍କୁ ଡାକି ଆଣିଦେବକି ? କହିବେ, ସେ ଯଦି ଦୟାକରି ଥରେ ଆସନ୍ତେ ମୁଁ ଭାରି ଉପକୃତ ହୁଅନ୍ତି ।

ହାଉସ୍‌କିପର୍ ଅଳ୍ପସମୟପରେ ଫେରି ଆସି ଜଣାଇଲେ ଡାଃ ଉଇଣ୍ଟର ଘଣ୍ଟାକ ଭିତରେ ଆସିବେ କହିଲେ । ଏଇମାତ୍ର ସେ ଡାଃ ପିଟାର୍ସନଙ୍କୁ ଦେଖିବାକୁ ଗଲେ, କାରଣ ସେ ଡ଼କାଇ ପଠାଇଚନ୍ତି ତାଙ୍କୁ ।

—*—

# ସ୍ୱର୍ଗାଦପି ଗରୀୟସୀ

ଖିରବେଳେ ନଣିଆ ମା ଘରେ ବସେ ନନ୍ଦପଡ଼ାର ବୁଢ଼ୀ-ମାନଙ୍କର ବୈଠକ । ବୋହୂମାନେ ଯେ ଯାହାଘରୁ ନେଇ ଯାଆନ୍ତି ପଖାଳ, କାଞ୍ଜି, ବେସର, ମହୁର, ସନ୍ତୁଳା, ରାଇ ଇତ୍ୟାଦି । ଯିଏ ଯେଉଁ ପ୍ରକାର ଭଲ ଜିନିଷ ତିଆରି କରି ଥାଆନ୍ତି ନେଇ ଯାଆନ୍ତି ନଣିଆ ମା ଘରକୁ । ଅନ୍ତ ଉପୁରେ ଶାଶୁମାନଙ୍କ ପାଇଁ ରାନ୍ଧି ଥାଆନ୍ତି ବୋହୂମାନେ, କାରଣ ପ୍ରତିଦିନ ସେଇଠି ବୋହୂମାନଙ୍କର ରାନ୍ଧୁଣି-ପଣିଆ ଠିକ ନଥି ବିଚାର ହୁଏ ।

ବାସୁଆ ମା ପାକୁଆ ପାଟିରେ ମେଞ୍ଚାଏ ଶାଗ ଗୁଞ୍ଜି ଦେଇ ଦୁଇ ମାଡ଼ି ଭିତରେ ଥରେ ଦାନ୍ତୁ ଦେଇ କହିଲା, ଉଁ ହୁଁ ହୁଁ, ମାଆଲୋ, କେତେ ନୁଣ ଦେଇଛି ଶାଗରେ ତୋ ବୋହୂଟା ଲୋ, ଆମ୍ଭକସି । କୁହନ୍ତି, ଶାଗ ଅଲଣା ମାଛରେ ଲୁଣ, ତେବେ ଜାଣିବ ରାନ୍ଧୁଣୀ ଗୁଣ । ଟିକିଏ କଅଣ ଖାତିର ଅଛି ଏ ବୋହୂଙ୍କର । ଆଜି କାଲି ପାଠ ପଢ଼ା ବୋହୂ ସଭିଏ ଆସିଛନ୍ତି । ମାଆଲୋ ଡ଼ପ ।

ବୋହୂ ମେଞ୍ଚାକ ଓଢଣା ଟାଣି ଜାକି ଜୁକି ହୋଇ ମନ୍ଦାଏ ତେଲଗୁଣି ପୋକ ଭଳି ଗୋଟିଏ କଣରେ ଛିଡ଼ା ହୋଇ ଥାଆନ୍ତି

ଶାଶୁମାନଙ୍କ ଆଦେଶ ବା ଟିପ୍‌ପଣୀକୁ ଝାଳ ରନ୍ତି । ବାସୁଆମାର ଟିପ୍‌ପଣୀ ଶୁଣି ସେମାନଙ୍କ ଭିତରେ ପରସ୍ପର ପ୍ରତି ଗୁହାଁ ଗୁହିଁର ଗୋଟିଏ ତରଙ୍ଗ ଖେଳି ଗଲା ।

ଆମ୍ବକସିର ନା'ଟି ଆମ୍ବକସି ନୁହେଁ । କାସୁ ବାବୁଙ୍କ ମା ଓ ଗୋପୀ ବାବୁଙ୍କ ମା ଦୁହେଁ ବସିଛନ୍ତି ଆମ୍ବକସି, ଦୁହେଁ ଏକା ସାଙ୍ଗରେ ନନ୍ଦପଣ୍ଡାଙ୍କୁ ବୋହୂ ହୋଇ ଆସିଥିଲେ । ସେତେବେଳେ ଝିକେ ଖରାଦିନର ଉଦୁଉଦୁଆ ଖରାବେଳେ ମଇଦାନ ଯିବା ବାହାନାରେ ନନ୍ଦମାନଙ୍କର ଇଜମାଲି ପ୍ରକାଣ୍ଡ ଆମ୍ବତୋଟାରେ ଦୁହେଁ ବୁଲୁ ବୁଲୁ କୋଇଲିର ଅବଶ୍ରାନ୍ତ କୁହୁ କୁହୁ ଶୁଣୁ ଶୁଣୁ ବିଦେଶରେ ଥିବା ସ୍ୱାମୀମାନଙ୍କ ବିରହରେ ବିଧୁରିତା ହୋଇ ଉଠିଥିଲେ ଓ ନୀରବରେ ଅଶ୍ରୁ ବିସର୍ଜନ କରିବା ପରେ ପରସ୍ପରର ଲୁହ ପୋଛି ଦେଇ ପରସ୍ପରକୁ ଆମ୍ବକସି ଖୁଆଇ ଦେଇଥିଲେ । ସେଇଦିନୁ ସେମାନେ ପରସ୍ପରକୁ ଆମ୍ବକସି ବୋଲି ଡାକନ୍ତି ।

ଗୋପୀ ବାବୁଙ୍କ ସ୍ତ୍ରୀ ଫୁସ୍ ଫୁସ୍ କରି ତାଙ୍କର ସଇଙ୍କୁ କହିଲେ, କି ବୁଦ୍ଧି କଲି ଗୋ ସଇ ମୁଁ ଆଜି ! କାହିଁକି ପୋଡ଼ାମୁହିଁ ମୁଁ ତାଙ୍କ ଚିଠି ପଢ଼ିବାକୁ ଗଲି । ଶାଶୁମାନେ କାଳେ ଏ କଥା ଶୁଣି ପକାଇବେ ଏଇ ଭୟରେ ସଇ ତାଙ୍କ ସଇଙ୍କ ମୁହଁରେ ହାତ ଥାପି ଦେଲେ ।

ଗୋପୀ ବାବୁଙ୍କ ଚିଠି ଆଜି ଆସିଥିଲା । ତାଙ୍କର ସ୍ତ୍ରୀ ସେଇ ଚିଠି ବୋହୂଘରେ ଚେଙ୍ଗେରାଇ ପଢ଼ୁ ପଢ଼ୁ ବିଭୋର ହୋଇ କେତେବେଳେ ଦୁଇବାର ଲୁଣ ଶାଗରେ ପକାଇ ଦେଇଛନ୍ତି ।

କିନ୍ତୁ ସେ ବିଷୟରେ ବିଶେଷ କିଛି ଅଳ ଟିପ୍‌ପଣୀ ହେଲାନାହିଁ । ରଜଛୁଟି ଆସୁଚି । ପୁଅମାନେ ସବୁ ଆସିବେ । ମା ମାନଙ୍କର ମନ କୁଣ୍ଢେ ମୋଟ । ସେ ଖୁସିରେ ଆମ୍ବକସି ବୋହୂର ଲୁଣିଆ ଶାଗ

ଉପରେ ସାମାନ୍ୟ ଟିକିଏ ଟିପ୍ପଣୀ ହେଲା ସିନା, ସମସ୍ତେ ସେଥିରୁ ମେଞ୍ଚି ମେଞ୍ଚିଏ ପାକୁଆ ପାଟିରେ ପକେଇ ଠାକିରା ମାରି ଦେଲେ ।

ଖାଇବା ସରିଲା । ବୋହୂମାନେ ଖୁସୀ ମନରେ କଲ ବଲ ହୋଇ ଦୌଡ଼ିଲେ ଯେ ଯାହା ଘରକୁ ବିଶ୍ରାମ ପରୀକ୍ଷା ପାଇଁ । ଶାଶୁମାନେ ଖାଇ ସାରିବା ପରେ ଯାହା ଘରକୁ ଖୁସୀ ହେବ ତା ଘରକୁ ଯିବେ । ସେ ଘର ବୋହୂ ଗୋଟିଏ ଲମ୍ବା ଚଉଡ଼ା ହେଁସ ପାରିଦେବ । ଶାଶୁ ବୁଢ଼ୀମାନେ ତା ଉପରେ ଲମ୍ବେ ଲମ୍ବେ ପଡ଼ିଯିବେ । ସେ ଘର ବୋହୂ ପାନ କୁଟାରେ ପାନ ଛେଞ୍ଚି ଟେଳାଏ ଟେଳାଏ ସମସ୍ତଙ୍କ ମୁହଁରେ ଗଳେଇଦବ । ଶାଶୁମାନେ ପାକୁଆ ପାଟି ବୁଲାଇବେ । ତା ପରେ ସେ ଘର ବୋହୂ ଜଣ ଜଣ କରି ଘଷି ବସିବେ । ସେଇଠି ଚାଲିବ ପ୍ରଶଂସା ବା ନିନ୍ଦା । ଗୋଟିଏ ବଳୁଆ ବୋବେଇଲେ ଯେମିତି ସବୁ ବଳୁଆ ବୋବାନ୍ତି, ଜଣେ ନିନ୍ଦା କଲେ ସେମିତି ସମସ୍ତେ ନିନ୍ଦା କରି ବସିବେ । ସେ ନିନ୍ଦା ବି ପ୍ରଶଂସାରେ ପରିଣତ ହେବାକୁ ବେଶୀ ସମୟ ଲାଗେ ନାହିଁ । ଯାହାଘରେ ଯେଉଁ ଦିନ ପାଳି ପଡ଼େ ସେ ଦିନ ସେ ବୋହୂର ଛାତି ଭିତରେ ଧଡ଼ ପଡ଼ ହଉଥାଏ । ଶାଶୁମାନେ ଘଷା ଖାଉ ଖାଉ ଗପ କରୁ କରୁ ଯେତେବେଳେ ଶୋଇ ପଡ଼ିବେ ତା ପରେ ବସି ବୋହୂମାନଙ୍କ ପଙ୍ଗତ, ଫୁସ୍ ଫୁସ୍ କରି ନିଜ ସ୍ୱାମୀମାନଙ୍କ ବିଷୟରେ କେତେ କଥା, ସାମାନ୍ୟ ସାମାନ୍ୟ କଥାରେ କେତେ ହସର ଲହରୀ ପରେ ଲହରୀ, ଆଉ ଗୃହିଆଡ଼କୁ ଗୃହିଁ ଡରି ଡରି ମଝିରେ ମଝିରେ ଶାଶୁମାନଙ୍କ ଉପରେ ଟିପ୍ପଣୀ ।

ଆଜି ଶାଶୁମାନେ ଖାଇ ସାରି ବାହାରିଲେ ଆମ୍ଭକିସି ଘରକୁ । ଗୋପୀ ବାବୁଙ୍କ ସ୍ତ୍ରୀ ପ୍ରମାଦ ଗଣିଲେ । କିନ୍ତୁ ଉପାୟ ନାହିଁ । ପରୀକ୍ଷା କରିବାକୁ ହିଁ ହବ । ନସ ବି. ଏ. ପାସ୍ କରିଚନ୍ତି ବା କଉ

ଲୋକର ଝିଅ ବା ଶ୍ରୀ ଗୋପୀନାଥ ନନ୍ଦ, ଏମ୍. ଏ. ଡେପୁଟି ମାଜିଷ୍ଟ୍ରେଟଙ୍କ ସ୍ତ୍ରୀ ବୋଲି ନମସ୍କାର ପାଇବେ ନାହିଁ ।

ଘଷା ଖାଉ ଖାଉ ବାସୁଆ ମା କହିଲେ, କାଲି ବୋହୂ, ତୁମ କଲକତାରେ ଘଷିବା ଶିଖାନ୍ତି କି ? ଏଡେ ସୁନ୍ଦର ଘଷା କେମିତି ଶିଖିଲୁ ବା !

ହରିଆ ବୋଉ କହିଲେ; ଅହିସୁଲକ୍ଷଣି ହୋଇ ଥା ମା, ବାଳରେ ସିନ୍ଦୂର ନାଇଥା ମା । ଆମ୍ଭକସିର କପାଳ ଭଲ । ଗୋଟିଏ ପୁଅ, ହେଲେ, ଶହେ ପୁଅ ସଙ୍ଗେ ସମାନ, ହାକିମ ହୁକର । ସେଥିରେ ବୋହୂ କଣଚି ଯେ ଲକ୍ଷ୍ମୀ ତ !

ଦୀର୍ଘନିଃଶ୍ୱାସ ପକାଇ ଆଖିର ଲୁହ ପୋଛି ଗୋପୀ ବାବୁଙ୍କ ମା' କହିଲେ, ଆଶୀର୍ବାଦ କରେ ତୁଳସୀ, ପୁଅ ନାତି ନେଇ ସେମାନେ ସୁଖରେ ଘର କରନ୍ତୁ, ସମସ୍ତଙ୍କ ମନ କଥା ବୁଝି କାମ କରନ୍ତୁ । ମୋର ଆଉ କେତେଦିନ ବା, ତାଳଗଛର ଗୁଇ, ଏଇକ୍ଷଣି ଅଛି, ଏଇକ୍ଷଣି ନାଇ ।

ଆଉ ଥରେ ଦୀର୍ଘ ନିଶ୍ୱାସ ପକାଇ ଲୁହ ପୋଛି ସେ କହି ବସିଲେ ତାଙ୍କର ଦୁଃଖର କାହାଣୀ । ଯେତେବେଳେ କଥା ପଡେ ସେ ଫିଟାନ୍ତି ତାଙ୍କ ଜୀବନର ସେଇ ଅଧ୍ୟାୟଟି । ସେ ଅଧ୍ୟାୟଟି ତାଙ୍କର ଯେତିକି ଦୁଃଖର, ସେତିକି ସୁଖର ମଧ୍ୟ ।

…ସେ ଦିନ କଥା ପରି ଲାଗୁଚି ଲୋ ଆମ୍ଭକସି । ଗୋପୀ କଅଣ କମ୍ କଷ୍ଟରେ ଜନ୍ମ ହୋଇଚି !! ସେତେବେଳେ ଥାଏ ପୁରୀରେ । ତା ବୋପା ସେଠି ଓକିଲି କରୁଥାଆନ୍ତି । ବାହା ପରେ ପରେ ପୁରୀରେ ରହିଲି ସାତ ବରଷ । ଶାଶୁ ବି ରହିଲେ ସେଠି । ତାଙ୍କର ତ ଗୋଟିଏ ବୋଲି ପୁଅ । ପୁଅକୁ ଛାଡ଼ି ସେ ବି ଗାଁରେ ରହିବେ କେମିତି ।

ମୋ ଶାଶୁ ଥିଲେ ଯେ···କଅଣ କହିବି ସେ କଥା । ପାନରୁ ଚୂନ ଖସିଚି ତ ସେ ଦିନ ତଳ ଉଣ୍ଟୁଲେଇଦେବେ । ବାହାଘର ବରଷେ ଚାଲିଗଲା, ଗାଧୋଇବା ବନ୍ଦ ହେଲା ନାହିଁ । ଶାଶୁଙ୍କର ତ ଦିନ ରାତି ଚାଲିଲା ଗାଳି । କେତେ ମାନସିକ କଲି । କେତେ ଢେଉଁରିଆ ପିନ୍ଧିଲି, କେତେ ଜଡ଼ିବୁଟିକା ଖାଇଲି, କାହିଁରେ କିଛି ହେଲା ନାହିଁ । ପ୍ରତି ମାସରେ ଗାଧୋଇଲି ।

ଆମ ପଡ଼ିଶା ଘରେ ଜଣେ ବାବୁ ଥାଆନ୍ତି ଯେ ତାଙ୍କର ବୋହୂ ଆଜି ବେଇଚି ତ ତାର ପର ମାସରେ ମାସିକିଆ ହୁଏ, ଆଉ ତା ପର ମାସରେ ମାସିକିଆ ବନ୍ଦ । ସାତ ବର୍ଷ ରହିଲା, ପାଞ୍ଚୋଟି ଛୁଆ ତାର ହେଲେ । ମୋ ଶାଶୁ ତ ତାଙ୍କୁ ଦେଖି ମୋ ଉପରେ ଆହୁରି ରାଗ ହେଉଥାଆନ୍ତି । ରକତ ଚାଉଳ ଚୋବାଉ ଥାଆନ୍ତି ସେ । ଦିନ ରାତି ଅଲକ୍ଷଣୀ, ଆଣ୍ଟୁକୁଡ଼ି, ପିତାସୁଣୀ, ହାତଗୋଡ଼ ଖାଇ ଗାଳି ।

ସିଏ ଖାଲି କହୁଥାଆନ୍ତି, ବ୍ୟସ୍ତ କାହିଁକି, ହେଲେ ହବ, ନ ହେଲେ ନାହିଁ । ଆମ ଦେଶରେ ତ ବର୍ଷକୁ କୋଟିଏ ଜନ୍ମ ହେଉଚନ୍ତି । ଆମେ ଏବେ ଆଉ ତ ଲୋକସଂଖ୍ୟା ନ ବଢେଇଲେ ତ ଭଲ ହେଲା । ଖାଲି ତ ଜନ୍ମ କଲେ ହବ ନାହିଁ । ଖୋଇ ପେଇ ମଣିଷ କଲେ ସିନା ହବ ।

ହେଲେ, ମୋ ମନ ମାନୁ ନ ଥାଏ । ଆଣ୍ଟୁକୁଡ଼ି ହେଇ ମରିବି । ମରି ଡ଼ାକୁଣୀ ହୋଇ ଶୋଷରେ ହା ହା ହୋଇ ବୁଲିବି । କେଉଁଠି ମୁନ୍ଦେଏ ପାଣି ବି ମିଳିବ ନାହିଁ । ପଡ଼ିଶା ଘର ବୋହୂକୁ ଦେଖି ଖାଲି ମନେ ହେଉଥାଏ, କେମିତି ତା ମାସିକିଆ ବନ୍ଦ ହେଉଥାଏ !! ଯେତେ ପ୍ରକାର ସେ କହିଲା ସେତେ ପ୍ରକାର କଲି । ଏଇକ୍ଷଣିକା ସିନା କହିବାକୁ ଲାଜ ମାଡୁଚି, ସେତେବେଳେ

ଆଢୁଅରେ ପଡ଼ି ଟିକଏ ବି ଲାଜ ମାଡ଼ୁ ନ ଥାଏ । ଥରେ···ଆମ୍ଭେ ବୋହୂ, ଯା ସବୁ ଖାଇବ ଯା । ଉଚ୍ଛୁର ହୋଇ ଗଲାଣି ଯା ।

ବୋହୂ ଅନେକ ଥର ଶାଶୁଙ୍କର ସେ ଇତିହାସ ଶୁଣି ସାରିଲେଣି । ସେ ଇତିହାସ କହିବାର ପ୍ରଚ୍ଛନ୍ନ ଇଙ୍ଗିତ ମଧ୍ୟ ସେ ବୁଝି ସାରିଲେଣି । ଆଉ ଶୁଣିବାକୁ ତାଙ୍କର ମନ ନାହିଁ । ଶାଶୁ କହିବା ମାତ୍ରକେ ସେ ଉଠିଗଲେ ସଇଙ୍କ ଘରକୁ । ଆଜି ସେଇଠି ତାଙ୍କର ପଙ୍ଗତ ବସିବ ।

ବୋହୂ ଗଲା ପରେ ଆମ୍ଭକୁ ଫିସ୍ ଫିସ୍ କରି କହିଲେ, ଛୁଆ ଜନ୍ମହେବା ପାଇଁ ପଡ଼ିଶା ଘର ବୋହୂ ଥରେ ଗୋଟିଏ ବାଟ ବତାଇ ଥିଲା । 'ସ୍ୱପସ୍ୱତି···' ବୋଲି ଯାହା କହନ୍ତି । ଆମେ ସେଇଆ କଲୁ ।

କିନ୍ତୁ କିଛି ଫଳ ହେଲାନାହିଁ, ତା ଆରମାସକୁ ଫେଏଣେ ଗାଧୋଇଲି । ସାତ ବରଷ ବିତିଗଲା । ଦିନେ ଶୁଣିଲି ଶାଶୁ ତାଙ୍କୁ ବୁଝାଉଛନ୍ତି ଆଉ ଗୋଟିଏ ବାହା ହେବାକୁ । ତାଙ୍କର ତା ବୋଉଙ୍କୁ ଭାରି ଡର । ବୋଉଙ୍କ କଥା ତଳେ ପଡିବ ନାହିଁ ତାଙ୍କର । ସେ କହିଲେ, ବୋଉ ତୁ ଯଦି ଭଲ ବୁଝୁଚୁ ମୁଁ ଆଉ କଅଣ କହିବି । କିନ୍ତୁ ତାର କି ଦୋଷ ବୋଉ ? ସେ କଅଣ କରିବ ? ସେ କଥା ଟିକଏ ଭାବୁଚୁ ? ଶାଶୁ କହିଲେ, ସେ ମରୁ କି ଯାଉ କୁଆଡ଼େ ଆଣ୍ଠୁକୁଡ଼, ମୁଁ କି ଜାଣେ, ତାପାଇଁ ତ ତୋ ବାପ ନିର୍ବଂଶ ହେବେ ନାହିଁ ?

ପୁଅକୁ କହି ଶାଶୁ ଯେମିତି ଘରୁ ବାହାରି ଆସିଲେ, ମୁଁ ତାଙ୍କ ଗୋଡ଼ଧରି ଲମ୍ବେ ଲମ୍ବେ ପଡ଼ିଗଲି । ଶାଶୁ ଗୋଇଠା ଗୋଟାଏ ମାରିଦେଇ ମୋତେ ଗଡ଼େଇ ପକେଇ କହିଲେ, ଦୁର୍·· ଦୁର୍

ଆଣୁ କୁଡ଼, ତୋ ମୁହଁ ସଜାଡ଼ୁ ଗୁହିଁ ମୋ ପୁଅ ଆଇଷ କମି ଯାଉଚ ।

ମୁଁ ତାଙ୍କ ଗୋଡ଼ ନ ଗୁଡ଼ି କହିଲି, ମା ମୋତେ ଆଉ ଦୁଇ ମାସ ସମୟ ଦିଅନ୍ତୁ, ତା ପରେ ଯଦି ତମ ବଂଶକୁ ପୁଅ ଗୋଟିଏ ନ ଦେବି, ମୋତେ ଘରୁ ତଡ଼ିଦେବ । ମୁଁ କିଛି କହିବି ନାହିଁ ।

ସେଦିନ ରାତିରେ କାନ୍ଦି ତାଙ୍କ ପାଦତଳେ ବି ଲୋଟି ପଡ଼ିଲି ଆମ୍ଭକସି । କେତେ ପିଠିରେ ଆଉଁଷି ମୋତେ ସେ ବୁଝାଇଲେ···

ସେଦିନର କଥା ଭାବି ଆଖିରୁ ତାଙ୍କର ଲୁହ ଝରି ପଡ଼ିଲା । କୋହରେ ସେ କିଛି କହି ପାରିଲେ ନାହିଁ । ସମସ୍ତେ କହୁଥାନ୍ତି ସେ କାହାଣୀ ଶୁଣି ପୁଣି ହୁଁ ହୁଁ ହେଲେ । ଗୋପୀନାଥ ବାବୁଙ୍କ ମା ଲୁହ ପୋଛି କହି ଗୁଲିଲେ···

ଏମିତି ମନ ବୁଝେଇ କଥା କହିବା ଲୋକ ତାଙ୍କ ପରି ଆଉ ଗୋଟିଏ ବି ଦେଖି ନାହିଁ ପରା !! ପିଠି ଆଉଁଷି ହସି ହସି ସେ କହିଲେ, ବୋଉକୁ କହି ତୁମକୁ ଦୁଇମାସ ସମୟ ମୁଁ ଦିଆଇବି ।

ତା ପରଦିନ ସେ ବୋଉଙ୍କୁ ବୁଝେଇ କହିଲେ । ବୋଉ କହିଲେ, ହଉ ଦୁଇମାସ ପରେ ତୋ ବାହା । ନମେଇ ବାବୁଙ୍କ ସହିତ ସବୁ କଥା ଠିକ୍ କରି ରଖିଚି । ପଡ଼ିଶା ଘର ବୋହୂ ତାଙ୍କର ଝିଅ, ତାର ସାନ ଭଉଣୀ ସହିତ ତୋ ବାହାଘର ହେବ ।

ସେଇଦିନୁ ଆମ୍ଭକସି, ଏକା ନିଷ୍ଠାରେ ରହିଲି । ନଇତି ଉପାସ କରେ, ଗୋପୀନାଥଙ୍କୁ ପୂଜାକରେ । ମାସେ ଗୁଲିଗଲା । ଗାଧୋଇଲି । ତାପରେ ଖାଇବା ଗୁଡ଼ି ଦେଇ କାନ୍ଦି ଗଡ଼ିଲି ଗୋପୀନାଥଙ୍କ ଗୋଡ଼ ତଳେ । ସାତଦିନ ସାତରାତି ଗଡ଼ିଲି ।

ତାପରେ···କହିଲିବେଳକୁ ତୁମ ଠାକୁର ଉଠୁଚ । ଦିନେ ରାତିରେ ଶୋଇଚି । ରାତି ଭୋରର ବେଳକୁ ସପନ ଦେଖିଲି ।

ଗୋପୀନାଥ ମୋ ଦୁଆର ମୁହଁ ପାଖରେ ଛିଡ଼ା ହୋଇ କହୁଛନ୍ତି, ଉଠ, ଖାଅ ତୁମେ ଯଦି ସ୍ୱାମୀଙ୍କ ବିଷ୍ଠାର ପୋକ ଖାଇବ ତେବେ ତୁମର ଗୋଟିଏ ପୁଅ ହେବ ।

ଶୁଣୁଁ ଶୁଣୁଁ ନିଦ ଭାଙ୍ଗିଗଲା । ଉଠି ଦେଖିଲି ନିଘୋଡ଼ ନିଦରେ ସେ ଶୋଇଛନ୍ତି, ତାଙ୍କ ଗୋଡ଼ତଳେ କେତେବେଳେ ମୁଁ ଶୋଇ ପଡ଼ିଥିଲି ମୋତେ ଜଣାନାହିଁ ।

ଉଠି ତାଙ୍କୁ ଜୁହାର ହୋଇ ଗୋପୀନାଥଙ୍କ ଘରକୁ ଯାଇ ତାଙ୍କୁ ଜୁହାର ହୋଇ କହିଲି, ଯାହା କହିଲ ତା କରିବି, କରିବି ।

ତାଙ୍କୁ ଯେ ସେତେବେଳେ ନାଲଝାଡ଼ା ହେଉଥାଏ ମୋ ଆମ୍ଭକସି, କଅଣ କହିବି !! ବାଡ଼ିକୁ ଗଲି; ଦୁଇଟା ଇଟା ପକାଇ ଗୋଟିଏ ଜାଗା କଲି । ହଁ, ଫେର୍ ଜାଗା କରୁ କରୁ ଗୋଟାଏ କଙ୍କଡ଼ା ବିଛା କାମୁଡ଼ି ଦେଲା । ଏଡ଼େ ବିଷ ତାର, ଲଉଟିତ ପଡ଼ିଲି । ହେଲେ, ପାଟି କଲେତ ଶାଶୁ ଉଠିବେ, ସବୁ ଭଣ୍ଡୁର ହୋଇଯିବ । ଦେହ କଅଣ ହୋଇ ଯାଉଥାଏ । ଟିକିଏ ଉଁ କି ଚୁଁ କି କଲିନାହିଁ । ଜାଗା କରିସାରି ରାତି ନ ପାହୁଣୁ ତାଙ୍କୁ ଯାଇ ବିଛଣାରୁ ଉଠେଇଲି । ସେତ ଉଠନ୍ତି ଡରିରେ । ମୋତେ ଦେଖି ସେ ଗୋରୁ ପଶିଚି ବୋଲି ପାଟି କରିବାକୁ ଯାଉଥିଲେ । ଦି ହାତରେ ତାଙ୍କ ମୁହଁ ଚିପିଧରି ଡାକିଲି ବାଡ଼ିକୁ ।

ବାଡ଼ିରେ ତାଙ୍କ ଗୋଡ଼ଧରି କହିଲି, ଏଇଠି ବସି ହଗ । ସେତ ଅବାକାବା ହୋଇ ଚାହୁଁଥାଆନ୍ତି, ମୁଁ ଖାଲି ଠାରିକରି କହୁଥାଏ, ପାଟି କରନା, ଯାହା କହୁଚି କର । ସେ ସେଇଠି ବସି ଝାଡ଼ା ଫେରିଲେ । ପାଣି ଦେଲି । ସେ ଗଲେ ବିଛଣାକୁ । ସେ ଝାଡ଼ାରେ ମୁଁ ଗୋଟିଏ କାଠି ପୋତିଦେଲି ।

ଆଉଅଛି ମାତ୍ର ପନ୍ଦର ଦିନ ଦୁଇମାସ ପୂରିବାକୁ । କାଠି ପୋଡିବାର ତିନଦିନ ପରେ ସେଥିରେ ପୋକ ହେଲେ, ସେ ପୋକରୁ ଗୋଟିଏ ଆଣି ଲୁଚେଇ ଖାଇ ଦେଲି ।

ଆଜ ଗୋଟିଏ କାଳ ପଡିଲା । ତାଙ୍କର ତ ନାଳଝାଡା । କରେ କଅଣ । ଇଷ୍ଟାଣ୍ଡେ ରହିଲା ଆଉ କେତୁଟା ଦିନ । ଯେତେ ଭୁଟୁକା ଭୁଟୁକ ଥିଲା ବାଟିଦ୍ଧର ତାଙ୍କୁ ଦିନରାତି ଖୋଇଲି । ତିନଦିନ ପରେ ତାଙ୍କର ଝାଡ଼ା ଭଲହେଲା ।

ଯେଉଁଦିନ ଭଲହେଲା ସେଦିନ ରାତିରେ ଭଲ ଶାଢ଼ୀ ପିନ୍ଧି, ଅତର ମାଖି, ମୁଣ୍ଡ ଭଲକରି କୁଣ୍ଡେଇ ଗହଣା ପିନ୍ଧି ଗଲି ଶୋଇବାକୁ । ମନେ ମନେ ଖାଲି ଗୋପୀନାଥଙ୍କୁ ଡାକୁଥାଏ ।

ଦୁଇମାସ ପୂରିବାକୁ ଆଉ ଦୁଇଦିନ ଥାଏ, ମୋ ମାସ ପୂରି ଗଲା । ସେଦିନ କିଛି ହେଲାନାହିଁ, ଦିନରାତି ଖାଲି ଡାକୁଥାଏ ଗୋପୀନାଥଙ୍କୁ କେମିତି ଏ ମାସକଆଁଟା ଅଟକ ଯାଉ । ତା ଆର-ଦିନ ଗଲା, ଗାଧୋଇଲି ନାହିଁ, ତା ଆରଦିନ ବି ଗଲା । ଏମିତି ଯେତେବେଳେ ସାତଦିନ ପୂରିଗଲା ଶାଶୁ ଶୁଣିଲେ ଯେ ମୁଁ ସେ ମାସରେ ଗାଧୋଇ ନାହିଁ ।

ଶାଶୁଙ୍କ ଋଳି ଆଉ ଦେଖେ କିଏ । ଓଃ, କେତେ ପୂଜା ଯେ ସେ କଲେ । ଗୋପିଆ ହବା ପର୍ଯ୍ୟନ୍ତ ପରା ସେ ମୋତେ କୁଟା ଖଣ୍ଡିକ ଦିଖଣ୍ଡ କରିବାକୁ ଦେଇ ନାହାନ୍ତି, ଦିନ ରାତି ମୋତେ ଆବୁରି ବସି ଥାଆନ୍ତି, ଆଉ ପୁରାଣ ଭାଗବତ ଶୁଣାଉ ଥାଆନ୍ତି ।

ଗୋପିଆ ଯେତେବେଳେ ହେଲା···କି ଦେଖିବ ଶାଶୁଙ୍କ ଆନନ୍ଦ !

ମୋ ଗୋପୀ ପୁଅ-ବୋହୂ ସୁଖରେ ଘର କରୁ, ଏଇ ଆଶିର୍‌ବାଦ କର ଛମେମାଣେ···

ଗାଁ ପୁରୋହିତ ନଥିଆନ୍ତି ସେତେବେଳେ ମଧ୍ୟାହ୍ନ ସ୍ନାନ ପରେ ମୋହମୁଦ୍‌ଗର ବୋଲି ଯାଉଥାଆନ୍ତି···ପୁନରପି ଜନମଂ ପୁନରପି ମରଣଂ ପୁନରପି ଜନନୀ ଜଠରେ ଶୟନଂ······



# ସମୁଦ୍ର

କୁନୁ ଥର ଥର ଆସି ବୋଉ କୋଳରେ ଗୁଞ୍ଜିଗାଞ୍ଜି ହୋଇ ବସି ବୋଉର ପଣତ କାନ ଟାଣି ଦେହରେ ଘୋଡ଼ାଇ କହିଲା, ବୋଉ ଉଁ ହୁଁ ହୁଁ ଭାରି ଶୀତ କରୁଚି ।

କୁନୁ ବୋଉ ଦୁଇପରସ୍ତ କରି ପଣତ କାନ ଘୋଡାଇ ଦେଇ ପୁଅର ଗୋଡ ଉପରେ ଖଣ୍ଡେ ରେଜେଇ ପକାଇ ଦେଇ କହିଲେ, ଗୀତ ଗା ।

କୁନୁ ମୁହଁ ଫୁଲାଇ କହିଲା, ନାଇଁ ନାଇଁ, ଗୋଟେ ସ୍ୱେଟର କିଣିଦବୁ ନାହିଁ, ନାଲିଆ ରଙ୍ଗର ?

—ହଉ ଆରମାସରେ ଦେବି, ବାପା ଦରମା ପାଆନ୍ତୁ କିଣି ଦେବି ।

କୁନୁବାପା କରଲେଜଠାଇ ରେଜେଇରେ ମୁହଁ ଢାଙ୍କ ଦେଇ ଆଖି ବୁଜିଦେଲେ । ତାଙ୍କର ରେଜେଇ ଟଣାରେ ମିନୁ ଦେହରୁ ରେଜେଇ ଟାଣି ହୋଇ ଖସିଯିବାରୁ ସେ ସକ୍ରନ୍ଦନ ଆପତ୍ତି ଜଣାଇଲା । କୁନୁବୋଉର ମିଜାଜ ଆଜିକାଲି ଭାରି ଖିଟିଖିଟା ହୋଇ ଗଲାଣି ସେ ଖେଁ କି ହୋଇ କହିଲେ, ବୁଢାଟି ହେଲଣି, ଟିକିଏ ବୁଝୁର ନାହିଁ···

କୁନୁ ବାପା କିଛି ନ କହି ମିନୁ ଉପରେ ପୁଣି ରେକେଇ ପକାଇଦେଇ ସ୍ୱପ୍ନପରି ଆଖିବୁଜି ପଡ଼ି ରହିଲେ ।

ବୋଉର ମୁହଁ ଜୋର କରି ନିଜ ଆଡ଼କୁ ଟାଣି ନେଇ କୁନୁ କହିଲା, ନାଇଁ ନାଇଁ, କା'ଲି କିଣିଦବୁ ।

କୁନୁ ବୋଉ ନିଷ୍ପୃହତା ଜଣାଇବା ପାଇଁ ମୁଣ୍ଡ ଯଥେଷ୍ଟ ଝୁଙ୍କାଇ କହିଲେ, ହଉ ତେବେ କାଲି କିଣିଦେବା ।

କୁନୁ କୌଣସି ବିଷୟରେ ଜିଦ୍ ଧରି ଯଦି କୁହେ ବୋଉ, କହିଥିଲୁ କା'ଲି ଜୋତା କିଣି ଦେବୁ ବୋଲି, କାହିଁ ଦେ । କୁନୁ ବୋଉ କହେ, କହିଚି ପରା କା'ଲି ଦେବି ।

କାଲି, କାଲି, କାଲି, 'ଆଜି' ନଗଦ କା'ଲି ଧାର' ଏ କାଲିର ଶେଷ ନାହିଁ, ଏ କାଲି ଅନନ୍ତ । ଏ 'କାଲି'କୁ ତ୍ୟାଗ କରିବା ପାଇଁ ବୁଦ୍ଧ କାମନା ତ୍ୟାଗ କରିବାକୁ କହିଲେ, ଏ କା'ଲିକୁ 'ଆଜି' କରିବା ପାଇଁ ଫରାସୀ ବିପ୍ଳବ ହେଲା, ମାର୍କସ୍ କମ୍ୟୁନିଜମ୍ ଉଦ୍ଭାବନ କଲେ, ଭାରତରେ ସ୍ୱାଧୀନତା ସଂଗ୍ରାମ ହେଲା ଏବଂ ପ୍ରଥମ ପଞ୍ଚବାର୍ଷିକ ଯୋଜନା ଯାଇ ଦ୍ୱିତୀୟ ଆରମ୍ଭ ହେଲାଣି ଏବଂ ତୃତୀୟ ଚତୁର୍ଥ ଆହୁରି କେତେ ପଞ୍ଚବାର୍ଷିକ ଯୋଜନା ହେବ । କୁନୁ ବୋଉର ମଧ୍ୟ ଏଇ କା'ଲିରେ କେତେ ମାସ କେତେ ବର୍ଷ ବିତି ଗଲାଣି, କିନ୍ତୁ 'କାଲି'ର ଶେଷ ନାହିଁ, ଏ ପ୍ରବହମାନ କାଲି ବୋହି ଚାଲିଛି ଅନନ୍ତକୁ । ଏ ପ୍ରବାହର ଆଦି ନାହିଁ, ଅନ୍ତ ନାହିଁ । କୁନୁ ବୋଉର ପଞ୍ଜରାଭେଦ କରି ଦୀର୍ଘଶ୍ୱାସ ବାହାରି ଆସିଲା । କୁନୁ ବାପାର ରେକେଇ ଥରେ ସ୍ଫୀତ ହୋଇ ଉଠିଲା । ଯେତେ ପୁଞ୍ଜିଭୂତ ରୁଦ୍ଧ କାମନା ଜୁଆର ପରି ଆସି ପୁଣିଥରେ ଭଟ୍ଟାରେ ଶେଷ ହୋଇଗଲା ।

କୁନୁ ବୋଉ କୁନୁ ପାଖରେ ନିଜର ଚର୍ମସାର ସ୍ତନାଗ୍ର ଦେଇ ଶୁଆଇବାକୁ ଚେଷ୍ଟା କଲେ । କୁନୁର ବୟସ ତିନିବର୍ଷ ହେଲାଣି

କିନ୍ତୁ ତଥାପି ତାର ତୃପ୍ତି ଆସିନାହିଁ । ସେ ବେଗକରେ ସ୍ତନ୍ୟପାନ କରିବାକୁ ଲଗିଲା ।

କବାଟ ଝରକା ସବୁ ବନ୍ଦ କରି କୁନୁ ବୋଉ ମୁଣ୍ଡ ଉପରେ ଝରକାରେ ଝୁଲା ହୋଇଥିବା ନଲଠଣଟି କମେଇ ଦେଇ କୁନୁ ବାପା କଡ଼ରେ ଗେଞ୍ଜି ହୋଇ ଶୋଇ ପଡ଼ିଲେ । ଆଉ ଗୋଟିଏ ରେଜେଇ ନିଜ ଉପରକୁ ଟାଣି ନେଇ କୁନୁ ଉପରେ ପକାଇ ଦେଲେ ।

ସମସ୍ତେ ଚୁପ୍ ଚାପ୍ । କୁନୁ ତା'ର କାମନାର ସ୍ୱପ୍ନ ଦେଖୁଛି, କୁନୁ ବାପା ମଧ୍ୟ କଳ୍ପନା କରୁଚନ୍ତି କେତେ ସୁଖ । କୁନୁ ବୋଉର କାମନାଗୁଡ଼ିକ ଖାଲି ଦୀର୍ଘଶ୍ୱାସରେ ବାହାରି ଘର ଭିତରର ବାୟୁ ଘନୀଭୂତ କରୁଛି । ଗୋଟାଏ କଙ୍କି କେଉଁଆଡ଼ୁ ଉଡ଼ିଆସି ନଲଠଣ ଚାରିପଟେ ଫର୍‌ଫର୍ ହୋଇ ବୁଲୁଛି ଏବଂ ନଲଠଣ କାଚ ଭିତରେ ଥିବା ନିଆଁର ଦୁର୍ବାର ଆହ୍ୱାନ ପାଇ ବାରମ୍ବାର ଚେଷ୍ଟା କରୁଛି ନିଆଁ ପାଖକୁ ଯିବାକୁ । ନିଜକୁ ନିଃଶେଷ କରିଦେବାର ଆଗ୍ରହରେ ସେ ଯେପରି ଅସ୍ଥିର ହୋଇ ପଡ଼ିଛି ।

କୁନୁ ବାପା ହଠାତ୍ ଧଡ଼୍‌ପଡ଼୍ ହୋଇ ବିଛଣାରୁ ଉଠିପଡ଼ି କହିଲେ, ଆରେ ମୁଁ ତ ଆଜି ଏ ପର୍ଯ୍ୟନ୍ତ କାଳି ମନ୍ଦିର ଯାଇନାହିଁ । କେତୁଟା ରାତି ହେଲାଣି !

କୁନୁ ବାପା ତରତର ହୋଇ ଉଠି ଗରମ ଗେଞ୍ଜି ଓ ସୁତା ପଞ୍ଜାବି ଖଣ୍ଡ ଦେହରେ ଗଳାଇ ଦେଇ ପୈତୃକ କାଣ୍ଟିଆ ଘୋଡ଼ି ହୋଇ ମଫଲରରେ ମୁଣ୍ଡ, କାନ୍ଧ ଓ ବେକ ନିବୁଜ ଭାବରେ ଘୋଡ଼ାଇ ବାହାରି ପଡ଼ିଲେ । ପ୍ରତ୍ୟହ କାଳି ମନ୍ଦିର ଥରେ ଯିବା ତାଙ୍କର ନିୟମ ।

କୁନୁ ବୋଉ ଆଖି ନ ଖୋଲି ପଚାରିଲେ, ମନ୍ଦିର କାମ ନ ସାରି ଘରକୁ ଫେରି ଆସିଥିଲ କିଆଁ ?

—ସାଙ୍ଗସାଥୀ ମେଳରେ ବସି ତାସ ଖେଳୁ ଖେଳୁ ଭୁଲି ଯାଇଥିଲି ।

ତାସ୍ ଖେଳିବାକୁତ ଦିନେ ଭୁଲୁନା ! ଆଖି ନ ଖୋଲି ସେମିତି ନିର୍ଲିପ୍ତ ଭାବରେ କୁନୁ ବୋଉ ପଚାରିଲେ ।

କୁନୁ ବାପା ହଠାତ୍ ଉତ୍କ୍ଷିପ୍ତ ହୋଇ ଡାକିଲେ, କଅଣ ହବ ନିଇତି ଯାଇ ? କଅଣ ମିଳୁଚି ସେଥିରେ ? ମୁଁ ଏ ଥଣ୍ଡାରେ ଯାଇ ପାରିବି ନାହିଁ, ଯାହା ହବାର ହଉ । ଯଉ ଦେଇ ପଢାଉଥିଲେ ଭଗବାନ ନ ଦେବେ ସେତିକି । କାହିଁକି ଏତେ କଷ୍ଟ ସହି ଯିବକି ମୁଁ ? କୁନୁବାପା ପଞ୍ଜାବି ଉତାରୁଥିଲେ ।

ବାଜେ କଥାଗୁଡିକ ଭଲଲାଗେ ନାହିଁ । ସେଇ ମନ ପାଇଁ ତ ଏତେ ଦୁଃଖ । ଗୁହାରି କଲେ ସିନା କେହି ଶୁଣିବେ । ଯାଅ ଶୀଘ୍ର କାମସାରି ଆସ ।

କୁନୁବାପା ମୋଜାପିନ୍ଧି ଯୋତାମାଡ଼ି ସଶବ୍ଦ ପଦକ୍ଷେପରେ ଘରୁ ବାହାରିଗଲେ । ଝଲକାଏ କନକନିଆ ଉତ୍ତରୀ ପବନ ମଜ୍ଜା-ଭେଦ କରି ବୋହିଗଲା । କୁନୁବାପା ମଫଲରକୁ ଆହୁରି ଜୋରରେ ଭିଡ଼ିଦେଇ ଦୁଇହାତ କାଣ୍ଠିଆ ତଳେ ଚରଚର ହୋଇ ମୁହାଁଇଲେ କାଠଯୋଡ଼ି ନଦୀକୂଳ ଆଡ଼େ । ପ୍ରତ୍ୟହ ଏଇବାଟରେ ସେ ମନ୍ଦିରକୁ ଯାଆନ୍ତି ଓ ଫେରନ୍ତି । ରାତି ବେଶୀ ହୋଇ ନାହିଁ, କିନ୍ତୁ ଶୀତଦିନ ରାତି । ଚାରିଆଡ଼େ ନିସ୍ତବ୍ଧ, ଜନଶୂନ୍ୟ ଝଲକାଏ ଥଣ୍ଡା ପବନ ସହିତ ମନରେ ପ୍ରବେଶ କଲା, ଗରମସୁଟର କାମନା । କି ଆଶ୍ଚର୍ଯ୍ୟ ସତେ ! ମନୁଷ୍ୟ କଅଣ ପ୍ରକୃତିକୁ ନିଜର ମନଦ୍ୱାରା ଜୟ କରି ପାରିବ ନାହିଁ ?

ଥଣ୍ଡା ପବନ କୁନୁବାପାଙ୍କ ସହିତ କିଛି ବାଟ ଆସି କାଠଯୋଡ଼ି ନଈ ଭିତରକୁ ଚାଲିଗଲା, ଦୟାକରି ବୋଧହୁଏ କୁନୁବାପା ଭାବିଲେ

ଗଜେନ୍ଦ୍ର ବାବୁଙ୍କ ଭଳି ଗୋଟିଏ ଗରମ ସୁଟ୍ କରି ପାରନ୍ତେ କି, ଆଉ ସୁନ୍ଦର ହୋଇଛି ଏକା ସେ ସୁଟ୍‌ଟି ।

କୁନୁ ବାପା ଚାଲୁ ଚାଲୁ କଳ୍ପନା କଲେ ସେମିତି ଗୋଟିଏ ସୁଟ୍ ସେ ପିନ୍ଧି ଚାଲିଛନ୍ତି । ବେକରେ ନେକ୍‌ଟାଇ, ହାତରେ ଦାମିକା ଘଡ଼ି । ପାଦରେ ପଚାଶ ଟଙ୍କା ଦାମର ଯୋତା, ବହୁମୂଲ୍ୟ ସ୍ୱେଟର, ଏଇ ସୁଟ୍ ପିନ୍ଧି ସେ ଯାଇଛନ୍ତି ରାଜଭବନକୁ, ସେଠାରେ ମିସ୍ ଧୁଙ୍ଗୁରିବାଲା...

କୁନୁବାପାଙ୍କ ଦନ୍ତ ବିକଶିତ ହେଲା । ହଠାତ୍ ତାଙ୍କ ଚେତା ପଶିଲା ଯେ ତାଙ୍କର କାମନା ତାଙ୍କୁ ଧୀରେ ଧୀରେ ଗହନ ବନ ଆଡ଼େ ନେଇ ଯାଉଛି । ଆଶ୍ଚର୍ଯ୍ୟ ହୋଇ ସେ ମନେ ମନେ କହିଲେ, କି ଆଶ୍ଚର୍ଯ୍ୟ, ପୃଥିବୀ ସୂର୍ଯ୍ୟ ଚାରିପଟେ ପରିକ୍ରମା କରୁ କରୁ ଟିକିଏ ସୂର୍ଯ୍ୟ ନିକଟକୁ ଚାଲି ଆସିଥିବାରୁ ହେଲା ଗ୍ରୀଷ୍ମଋତୁ । ଅତି ସାଧାରଣ ନିୟମ କିନ୍ତୁ ଗ୍ରୀଷ୍ମର ପ୍ରବେଶ ସହିତ ମନରେ ପ୍ରବେଶ କଲେ ଅଦ୍ଧି ପଞ୍ଜାବି, ସିଲ୍କ ପଞ୍ଜାବି, ବିଜୁଳି ପଙ୍ଖା, ଥରେ ଥରେ ମଟର ଗାଡ଼ିରେ ସୁନ୍ଦରୀ ଯୁବତୀଙ୍କୁ କଡ଼ରେ ବସାଇ ହାଓ୍ୱା ଖିଆ, କାଶ୍ମୀର ସିମଲା । ପୃଥିବୀ ସୂର୍ଯ୍ୟଠୁ ଟିକିଏ ଦୂରକୁ ଚାଲିଗଲା, ପ୍ରବେଶ ହେଲା ଶୀତ ଏବଂ ଯୋଉଁ ଝଲକାଏ ଥଣ୍ଡା ପବନ ତାଙ୍କୁ ଛୁଇଁ କାଠଯୋଡ଼ୀ ନଈ ଭିତରକୁ ଚାଲି ଯାଇଥିଲା ସେ କାହାରିକୁ ସାଥୀ ନ ପାଇ ବା କାହାରିକୁ ଉତ୍ପୀଡ଼ନ କରିବାକୁ ନ ପାଇ ଫେରି ଆସିଲା ବୋଧହୁଏ । କୁନୁବାପାଙ୍କୁ ଦେଖିପାରି ପୁଣି ତାଙ୍କ ସହିତ ଚାଲିଲା । କୁନୁବାପା ବିରକ୍ତ ହୋଇ ପୁଣି ଭଲ କରି ଘୋଡ଼ିଘାଡ଼ି ହୋଇ ଚାଲିଲେ ।

...ସେଃ, ଅର୍ଥଶାସ୍ତ୍ର କୁହେ, କନାକୁ ଦେଖି କୋଟ କାଟିଜ, ଆୟ ଅନୁସାରେ ବ୍ୟୟ କରିବ, କିନ୍ତୁ ଆୟର ଲୌହ ପ୍ରାଚୀର

ଘଣ୍ଟରେ ଲୁଛ କାମନା ନିଚୟ ପୁଞ୍ଜୀଭୂତ ହୋଇ ସୃଷ୍ଟି କରେ ବିଦ୍ରୋହ, ବିଦ୍ୱେଷ ଓ ବିଷାକ୍ତ ବିରାଗ । କେଉଁ ଅର୍ଥ ଶାସ୍ତ୍ର ସେଠି ଖଟିଲା କି ?···କାମନାର ବିନାଶରେ ଦୁଃଖର ବିନାଶ—ବାଃ, ମୁଁ ଯଦି ଏ ଗରମ ସୁଟ ପିନ୍ଧିବାର କାମନାର ବିନାଶ କରେ ଏବଂ ସମସ୍ତେ ଏହିପରି ବିନାଶ କରିବାକୁ ସମର୍ଥ ହୁଅନ୍ତି ତେବେ ବିବର୍ତ୍ତନ ତ ବନ୍ଦ ହୋଇଯିବ । ତେବେ ତ ମନୁଷ୍ୟ ସୃଷ୍ଟି ଲୋପ ପାଇଯିବ । କାମନାଇ ତ ଜନ୍ମାନ୍ତର ଜନ୍ମ ।

···କାହିଁକିବା ରୋଧ କରିବି । ମୁଁ ଲକ୍ଷପତି, କୋଟିପତି ହେବାକୁ ଚାହୁଁ ନାହିଁ, କ୍ଷୁଦ୍ର ମୋର କାମନା, ଦୁଇଶହ ବା ତିନିଶହ ଟଙ୍କାର ଗରମ ସୁଟ୍ ଗୋଟିଏ । କୁନୁର ଖଣ୍ଡେ ସ୍ୱେଟର କିଣି ପାରୁନାହିଁ ! କୁନୁବୋଉ ଖଣ୍ଡେ ଗରମ ଚାଦର କିଣିବ ବୋଲି ଦୁଇବର୍ଷ ହେଲା ଚେଷ୍ଟା କରୁଛି !! ଘରେ ଗୋଟିଏ ରେଡ଼ିଓ କି ଗ୍ରାମଫୋନ୍ ନାହିଁ ଯେ ମଣିଷ ଖଟି ଖଟି ଆସି ଟିକିଏ ଆରାମରେ ବସି କଷ୍ଟ ଲାଘବ କରିବ !!!

ନାଃ ଯା ହେବାର ହେବ କାଲି ନିଶ୍ଚୟ ସୁଟ୍ ପାଇଁ ବରାଦ ଦେବି ।

ଖିଲି ଖିଲି ହସର ସ୍ରୋତରେ କୁନୁବାପା ଚମକି ପଡ଼ି ଚାହିଁ ଦେଖିଲେ ରାସ୍ତା କଡରେ ଶୋଇଚନ୍ତି ଦୁଇଟି କୁଷ୍ଠ ରୋଗୀ, ଗୋଟିଏ ଘୋଡ଼ି ହୋଇଚି ଶତ ଛିନ୍ନ ଗୋଟିଏ କନ୍ଥା ଏବଂ ଅନ୍ୟଟି ଘୋଡ଼ି ହୋଇଚି ଗୋଟିଏ ମୋଟା ଅଖା । ମୋଟା ଅଖା ଛିଣ୍ଡା କନ୍ଥାକୁ କହୁଚି, ହେଁ ହେଁ ବୁଝିଲୁ, ଯେମିତି ଦେଖିଲି ସେ ପେଟା ମାରୁଥାଡ଼ ଅଖା ଖଣ୍ଡିକ କୋଠା ଉପରୁ ତଳକୁ ପକେଇ ଦେଖିଚି, ମାଡ଼ି ବସି ତାକୁ ଧରିତ ଲାଗେ । ଗୋଠା ଡ଼ାମ୍ପଣ ଓ ସୁଭୁଲ ନେହୁରା ହୋଇ ଜଣକ ଘରୁ ମାଗି ଛିଣ୍ଡା ଜାଗା ସବୁ ସିଲାଇ କରିବାକୁ ବସିଗଲା । ଆଜି କଅଣ କିଛି ଖାଇଚି କି, ଭିକ ବି ମାଗି ପାଇନାହିଁ । କେମିତି

ଯିବ କହୁନାହୁଁ ? ଢନଯାକତ ବସିଲ ସିଲେଇ କରିବାକୁ, ଶଳା ହାତଟା ବେଶୀ ଖଣ୍ଡିଆ ହୋଇ ଗଲଣି ଯେ ଡ଼ାମ୍ପଣ ଧରି ପାରୁନାହିଁ । ଲଗିଚ ତ ଢନଯାକ ଆଉ, ଯା'ହଉ ଆଜ ରାତିକୁ ଆରାମରେ ଟିକଏ ଶୋଇବ ।

ଛୁଣ୍ଡ୍ରାକନ୍ଥା ପିନ୍ଧା ଲୋକଟା କହିଲ, ହ ଅରେ ଭାଇ ଖୁଦା ଯିସକୁ ଦେତା ଛପର୍ ଫାଡକେ ଦେତା ।

କୁନୁବାପା ସ୍ତମ୍ଭୀଭୂତ ହୋଇ ସେଠି ଛୁଡ଼ାହୋଇ ରହିଲେ ।



# ମାଦଳାପାଞ୍ଜି

ଠିକ୍ ଯେତେବେଳେ ରାତି ବାରଟା ବାଜେ ସେତେବେଳେ ସିନେମାର ଦ୍ୱିତୀୟ ଶୋ ସରଯାଏ ଏବଂ ରାତିର ନିସ୍ତବ୍ଧତା ଭେଦକରି ସିନେମା ହଲ୍ ଆଡୁ ଭାସି ଆସେ ରେକର୍ଡ଼ ସଂଗୀତ, ହରେ ମୁରାରେ ମଧୁକୈଟଭାରେ ଗୋପାଳ ଗୋବିନ୍ଦ ମୁକୁନ୍ଦ ସୌରେ, ଯଜ୍ଞେଶ ନାରାୟଣ କୃଷ୍ଣ ବିଷ୍ଣୋ ନିରାଶ୍ରୟ ମାଂ ଜଗଦୀଶରକ୍ଷ । ସିନେମା ଶେଷରେ ଏହି ରେକର୍ଡ଼ଟି ନିଇତି ବାଜେ । ଭାରି ସୁନ୍ଦର ଉଦାସିଆ ସୁରଟିଏ । ଠିକ୍ ସେତିକିବେଳେ କଇଦଖାନାର ଘଣ୍ଟା କର୍କଶ ସ୍ୱରରେ ବାଜି ଉଠେ ଢ଼ଂ ଢ଼ଂ ଢ଼ଂ...

ବଜନ ବାବୁଙ୍କର ଏତିକିବେଳେ ଠିକ୍ ନିଦ ଭାଙ୍ଗିଯାଏ । ଆଜି ମଧ୍ୟ ଭାଙ୍ଗିଗଲା, ସେ ଉଠି ମୁହଁ ହାତ ଧୋଇ ଲେଖି ବସିଲେ ଡାଏରୀ ନୁହଁ ମାଦଳାପାଞ୍ଜି । ସେ ଦିନକ ଭିତରେ ଯାହା ଘଟିଥାଏ ସବୁ ସେଥିରେ ସ୍ଥାନ ପାଏ । ଧୀରେ ପଦ ସ୍ମରଣ କରୁ କରୁ ସେ ଭାବିବାକୁ ଲାଗିଲେ ଆକାଶକୁ ଚାହିଁ, ଦିନଟି ଯାକର ଘଟଣା ଗୁଡ଼ିକ । ଆକାଶରେ ସପ୍ତତାରକା ସମନ୍ୱିତ ବିରାଟ ପ୍ରଶ୍ନବାଚକ ଚିହ୍ନଟି ଝୁଲୁଚି ଓ ତାଙ୍କ ଆଡ଼କୁ ଚାହିଁ ମୁରୁକି ମୁରୁକି ହସୁଚି ।

ଅଧର ପ୍ରାନ୍ତରେ ଟିକଏ ହସ ଖେଳିଗଲା ତାଙ୍କର, ସମସ୍ତ ଘଟଣା-ଗୁଡ଼ିକ ମନେ ମନେ ରୋମନ୍ଥନ କରୁ କରୁ ସେ ଅନୁଚ୍ଚକଣ୍ଠରେ କହିଲେ, ମନୁଷ୍ୟ ପ୍ରତ୍ୟେକ ଘଟଣାର ଗୋଟାଏ କାରଣ ଖୋଜିବାକୁ ଚେଷ୍ଟାକରେ । କିଛି ଗୋଟାଏ କାରଣ ସ୍ୱରୂପ ପାଇଗଲେ ସେ ପାଏ ଗୋଟାଏ ଆତ୍ମପ୍ରସାଦ । ସବୁ ବୁଝି ପାରୁଚି ବୋଲି ଭାବିନେଇ ସେ ନିଜକୁ ବୁଦ୍ଧିମାନ ବୋଲି ସିଦ୍ଧାନ୍ତ କରି ପାଏ ତୃପ୍ତି । କିନ୍ତୁ ଜୀବନରେ ଘଟଣା ପରେ ଘଟଣା ଘଟିଯାଏ । କୌଣସିଟି ସହିତ ଅନ୍ୟ କୌଣସିର କାର୍ଯ୍ୟ କାରଣ ସମ୍ବନ୍ଧ ଖୋଜିବା ବୋଧହୁଏ ମୂର୍ଖତା । ଜୀବନ କେବଳ କେତେକ ଗୁଡ଼ାଏ ଘଟଣାକୁ ବାଛି ଗୋଟିଏ ସୂତ୍ରରେ ଗୁନ୍ଥି ଭିନ୍ନ ଭିନ୍ନ ମାଳା କରି ରଖେ ।

କଥାଟି ତାଙ୍କ ମନକୁ ପାଇଲା । ଡ଼ାଏରିରେ ଦିନର ଘଟଣା-ଗୁଡିକ ଲେଖିବା ପୂର୍ବରୁ ସେତକ ଲେଖି ରଖି ସେ ଆରମ୍ଭ କଲେ···

···ସାଢ଼େ ଦଶଟା ବାଜି ଗଲାଣି । ତରି ତରି ହୋଇ ଚାଲିଚି କଚେରି । ଆଜି ଦଶଟି ଫୌଜଦାରି ମକଦ୍ଦମାର ଶୁଣାଣି ଅଛି । ଅନ୍ତତଃ ପନ୍ଦରଟି ସାକ୍ଷୀର ଜେରା ଓ ଜବାନବନ୍ଦୀ ନିଆହେବ । ତରି ତରି ହୋଇ ଚାଲିଚି । ବାଟରେ ଦେଖିଲି ଦୁଇଟି ମୁଦାଲିକୁ ବାନ୍ଧି ଦୁଇଟି ପୁଲିସ୍ କନେଷ୍ଟବଲ ଚାଲିଛନ୍ତି ତରି ତରି ହୋଇ । କନେଷ୍ଟବଲ ଦୁଇଜଣଙ୍କର ମଧ୍ୟରେ ରଗାରଗିରେ କଥାବାର୍ତ୍ତା ଚାଲିଚି । ଜଣେ କହୁଚି, ଯା ଯାଃ ରେ, ତୋର ମାଇପ ପରା ମୋ ଘରକୁ ସେଦିନ ଆସିଥିଲା ଯେ ମୋର ପୁଅର ପେଣ୍ଟୁଟି ଲୁଚେଇ ନେଇଗଲା, ତୁ କଅଣ ଦେଖେଇ ହଉଚୁ···ତୋ କଥା କହିବାର ଦରକାର ନାହିଁ ।

ଏ କଥାରେ ଅନ୍ୟ ଜଣକ ଖିଷଣ ରାଗିଯାଇ ହାତ ହଲେଇ ଅନର୍ଗଳ ବକ ଚାଲିଲା ତାର ସାଧୁତାର ନାନା ଉଦାହରଣ, ଆଉ ମଝିରେ ମଝିରେ ଅନ୍ୟ ପ୍ରତି ଗାଳି ମଧ୍ୟ ବର୍ଷୁଥାଏ ।

ମୁଦାଲି ଦୁଇଜଣଙ୍କ ହାତରେ ହାତ କଡ଼ି, ସେମାନଙ୍କ ଅଣ୍ଟାରେ ଦଉଡ଼ି ବନ୍ଧାହୋଇଛି । ଦଉଡ଼ିର ଅଗଟି ପଛରେ ଯାଉଥିବା କନେଷ୍ଟବଲଟି ଧରିଛି । ରାଗରେ ସେ ଦଉଡ଼ିଟି ଏ ହାତରୁ ସେ ହାତ ପଚିଶ ଥର କରୁଛି । ଆଗରେ ଯାଉଥିବା କନେଷ୍ଟବଲ ଜଣକ ବାରମ୍ବାର ବୁଲି ପଡ଼ି ପଛବାଲାକୁ ଗାଳି ଦବାରେ ଲାଗିଛି, ବାଟଯାକ ଠାଏ ଠାଏ ଠିଆ ହୋଇ ଚାଲିଚନ୍ତି ସମସ୍ତେ ।

ଏମିତି କଲେ ଉଛୁର ହୋଇଯିବ ଯେ । ବେଳ ହୋଇ ଗଲାଣି । ହାକିମ ରାଗିବେ ଯେ । ଘର ଝଗଡ଼ା ସେମିତି ହୋଇଥାଏ । ସେଥିରେ ଏତେ ରାଗିଲେ ଚଳିବ । କେତେଦିନ ଏ ଦୁନିଆରେ ରହିବା ଯେ ଏତେ ଦ୍ୱନ୍ଦ୍ୱ···ଜଣେ ମୁଦାଲି ଆଗ କନେଷ୍ଟବଲଟିକୁ ଚେଷ୍ଟାକଲା ।

କନେଷ୍ଟବଲ ରାଗିଯାଇ କହିଲା, କଅଣ କହୁଛ ହୋ ! ତୁମେତ ଚାରିଥର ଚୋରି କେସ୍‌ରେ ଧରା ହେଲଣି । କହିଲ ଭଲା, ଏମିତି କେହି ଚୋରି କରନ୍ତି ! ଏଟା ତୁମକୁ ସମ୍ଭବ ଲାଗୁଛିତ ? ଖାଲି କହିଦେଲେ ହେଲା କି ?

ମୁଦାଲି ଜଣକ ଟିକିଏ ହସି କହିଲା, ନା, ନା ସେମିତି ଚୋରିକୁ ଭାରି ହାତ ସଫେଇ ଦରକାର······

ଏଟମ୍‌ବୋମା ଉଦ୍ଭାବନ ଗୋଟିଏ ଅଦ୍ଭୁତ ଘଟଣା ସତ, କିନ୍ତୁ ଏ ଘଟଣାଟି ମଧ୍ୟ କମ୍ ଅଦ୍ଭୁତ ନୁହଁଇ !

ଗମ୍ଭୀରଭାବରେ ସେମାନଙ୍କୁ ଆଗେଇ ଗଲି । ମନରେ କିନ୍ତୁ ଭାରି ହସ ମାଡୁଥାଏ । ମୋତେ ଦେଖି ସେମାନଙ୍କର କଳହ ହଠାତ୍ ବନ୍ଦ ହୋଇଗଲା । ଦୁଇଜଣ କନେଷ୍ଟବଲ ଜଭ କାମୁଡ ଛିଡ଼ା ହୋଇପଡ଼ି ସେଲ୍ୟୁଟ୍ କଲେ । ଗମ୍ଭୀରଭାବରେ ମୁଣ୍ଡ ଟୁଙ୍ଗାରି ଚାଲିଗଲି ।

କୋର୍ଟରେ ଚୌକିରେ ବସିବା ମାତ୍ରକେ ପେସ୍କାର ଛାଡ଼ାଏ ମକଦ୍ଦମା ନଥି ସାମନାରେ ରଖିଦେଲେ ।

ଉକିଲ ପକ୍ଷମାନଙ୍କୁ । ପ୍ରଥମରୁ ଗୋଟାଏ ନଥି ଧରି ଆଦେଶ ଦେଲି ।

×　　×　　×

ଜମାନବନ୍ଦୀ ସରିଲାଣି । ଜେରା ଚାଲିଚି ତ ଚାଲିଚି । ଲେଖି ଲେଖି ହାତ ବଥେଇଲାଣି । କିନ୍ତୁ ଓକିଲର କ୍ଳାନ୍ତି ନାହିଁକି ସାକ୍ଷୀର ମଧ୍ୟ କ୍ଳାନ୍ତି ନାହିଁ । ଚଶମାକୁ ଥରେ କାଢ଼ି ମୁଣ୍ଡ ନୁଆଇଁ କପାଳରେ ଦୁଇ ତିନଥର ଟିପ ମାରି ପୁଣି ମୁଣ୍ଡ ଟେକି ସାକ୍ଷୀଆଡକୁ ଗୋଟାଏ କ୍ରୂର ଦୃଷ୍ଟି ନିକ୍ଷେପକରି ଓକିଲ ଗୋଟିଏ ପ୍ରଶ୍ନବାଣ ଛାଡୁଛନ୍ତି । ଓକିଲ ଡାକେ ଡାକେ ଗଲେ ସାକ୍ଷୀ ଯାଉଚି ପଛେ ପଛେ । ନିର୍ବିକାର ଭାବରେ ସାକ୍ଷୀ ଏମିତି ଗୋଟାଏ ଉତ୍ତର ଦେଉଚି ଯେ ଓକିଲର ଅକଲ ଗୁଡୁମ୍ । ଏମିତି ଏକଘଣ୍ଟା ସମୟ ଗଲାଣି ଓ ଚୌଦପତର ଜେରା ଲେଖି ସାରିଲିଣି । ମଝିରେ ମଝିରେ ଦୁଇ ଓକିଲଙ୍କ ମଧ୍ୟରେ କଳି ଏବଂ ପରସ୍ପର ପ୍ରତି କଟୁ ମନ୍ତବ୍ୟ ନିକ୍ଷେପ ଦ୍ୱାରା ସମୟ ଯେ କେବଳ ନଷ୍ଟ ହେଉଚି ତା ନୁହଁ, ମୋ ପକ୍ଷରେ କ୍ରମେ ଧୈର୍ଯ୍ୟ ରଖିବା ଅସମ୍ଭବ ହୋଇ ପଡୁଚି । ଆଜି ଦିନରେ ଦଶଟି ମକଦ୍ଦମାର ଶୁଣାଣିରେ ପନ୍ଦରଟି ସାକ୍ଷୀର ଜମାନବନ୍ଦୀ ଓ ଜେରା ହେବାକୁ ଧାର୍ଯ୍ୟ ଅଛି । ମାତ୍ର ସାତଟି ସରିଚି । ବେଳ ଆସି

ହେଲଣି ବନ ଦୁଇଟା । ମଝିରେ ମଝିରେ ଅଛି ଅନ୍ୟାନ୍ୟ ବିଭାଗ-ମାନଙ୍କର ଜରୁରୀ କାମ, ଜିଲ୍ଲା ସାହେବଙ୍କ ଜରୁରୀ ଡାକରା । ମନ ଦେଇ ଜେର୍ ଶୁଣି ଲେଖୁ ଲେଖୁ ହଠାତ ଜଣେ କିରାଣୀ ଆସି କହିଲା, ଗୋଟାଏ ଜରୁରୀ ତାର ଆସିଚି, କଅଣ କରିବାକୁ ହେବ ଆଦେଶ ଦିଅନ୍ତୁ । ଫାଇଲ ଦେଖି ସେ ବିଷୟରେ ଚଟାକିନା ଗୋଟାଏ ନିର୍ଦ୍ଦେଶ ଦେଇ ପୁଣି ମନ ଦେଇ ଜେର୍ ଲେଖିଚି କି ନା କିଛିକ୍ଷଣ ଜିଲ୍ଲା ସାହେବଙ୍କ ଚପରାସି ଆସି କହିଲା, ସାହେବ ସଲାମ୍ ଦେଇଛନ୍ତି । ଲେଖା ବନ୍ଦକରି ଉଠିଗଲି । ସେଠିକା କାମ ସାରି ଆସି ପୁଣି ବସିଲି ଜେର୍ ଲେଖିବାକୁ । ମନଟା ଯେମିତି ଗୋଟାଏ ଖୁଣ୍ଟିରେ ବନ୍ଧା ହୋଇଥିବା ରବରର ଫିତା ଖଣ୍ଡେ । ତାକୁ ଯାର ଇଚ୍ଛା ଯେତେଦୂର ଜୋରକରି ଟାଣି ନେଇ ତାଙ୍କର କାମରେ ନିଯୁକ୍ତ କରି କାମସାରି ପୁଣି ଛିଟ୍ କରି ଛାଡ଼ି ଦେଇଛନ୍ତି ଏବଂ ସେ ପଟାଂ କରି ଆସି ବାଜୁଚି ସେଇ ଖୁଣ୍ଟିରେ ।

ଆଜି ଏ ସାକ୍ଷୀଟି ବି ଗୋଟିଏ ଅସମ୍ଭବ ଧୂର୍ତ୍ତ । କଟକର ଜଣେ ଖ୍ୟାତନାମା ଓକିଲଙ୍କୁ ସେ ପାଣି ପେଇ ଦେଇ ସାରିଲାଣି । ଜେର୍ ଲେଖୁଚି ଆଉ ମନେ ମନେ ଭାବୁଚି, ଆଶ୍ଚର୍ଯ୍ୟ ହୋଇ ଭାବୁଚି, କିଏ କୁହେ ଗାଁର ଲୋକେ ସରଳ ସୁନ୍ଦର !! ମୁଦାଲା ପକ୍ଷର ଓକିଲ ଜଣେ ଟାଣୁଆ, ଅଭିଜ୍ଞ ଓକିଲ । ଆଇନ ବିଷୟରେ ତାଙ୍କର ଜ୍ଞାନ ଅସୀମ । ତାଙ୍କର ସମକକ୍ଷ ଖୁବ୍ କମ୍ ଓକିଲ । ସମସ୍ତେ ତାଙ୍କ ବିପକ୍ଷରେ ଛିଡ଼ା ହେବାକୁ ଡରନ୍ତି । ମୁଦେଇ ପକ୍ଷର ଓକିଲ ଜଣେ ନୂତନ ଅନଭିଜ୍ଞ ଟୋକା ଓକିଲ । ଯାହାର ପାଠ ଠାରୁ ଗାଠ ଉପରେ ବେଶୀ ଦଖଲ । ମୁଦାଲା ଓକିଲ ମୁଦେଇ ସାକ୍ଷୀକୁ ଜେର୍‌କରି ଗୋଟିଏ ପ୍ରଶ୍ନ ପଚାରିବା ମାତ୍ରେ ମୁଦେଇ ଓକିଲ ଛିଡ଼ାହୋଇ ମୋତେ ସୁହାଁ ନିଶ୍ଚିତ ଭାବରେ ଜଣାନ୍ତି ଇୟୋର୍

ଅନର୍, ଏ ପ୍ରଶ୍ନ ସାକ୍ଷ୍ୟପ୍ରମାଣ ଆଇନର ୬୫ ଧାରା ଅନୁସାରେ ଅବାନ୍ତର ଏବଂ ତେଣୁ ଗ୍ରହଣଯୋଗ୍ୟ ନୁହଁ ।

ମୁଁ ଜାବା ହୋଇ ରହେଁ । ମୁଦାଲା ଓକିଲ ମଧ ଜାବା ହୋଇ ତାଙ୍କ ଆଡ଼େ ଚାହିଁ କୁହନ୍ତ; ଅର୍ବାଚୀନ । ତାପରେ ଚାଲେ ତର୍କ । ବହି ଖୋଲାହୁଏ ଏବଂ ପ୍ରଶ୍ନ ଅବାନ୍ତର ନୁହଁ ବୋଲି ସାବ୍ୟସ୍ତ ହୁଏ । କିନ୍ତୁ ଏମିତି କରି କରି ମୁଦେଇ ଓକିଲ ମୁଦାଲା ଓକିଲଙ୍କୁ ଉତ୍‌କ୍ଷିପ୍ତ କରି ସାରିଲେଣି । ତାଙ୍କର ମଧ ଧୈର୍ଯ୍ୟଚ୍ୟୁତି ଘଟିଲାଣି ।

ଆପଣ କେବେ ଚୋରି ମକଦ୍ଦମାରେ ଧରା ହୋଇଥିଲେ କି ? ମୁଦାଲା ଓକିଲ ସାକ୍ଷୀକୁ ପଚାରିଲେ ।

ଇଓ୍ୱୋର୍ ଅନର୍ ଏ ପ୍ରଶ୍ନ ସାକ୍ଷ୍ୟପ୍ରମାଣ ଆଇନାନୁସାରେ ଅବାନ୍ତର ଓ ତେଣୁ ଗ୍ରହଣଯୋଗ୍ୟ ନୁହ । ମୁଦାଲା ଓକିଲ ଜ୍ୟା-ମୁକ୍ତ ଧନୁବତ୍ ଛିଡାହୋଇ ଏତେକ କହି ନିର୍ଲିପ୍ତ ଭାବରେ ବସି ପଡ଼ିଲେ ।

ମୁଦେଇ ଓକିଲ ପାଟି ମେଲାକରି ଚାହିଁ କହିଲେ, ତୁମେ ମଧ ଅବାନ୍ତର ଓ ଗ୍ରହଣ ଯୋଗ୍ୟ ନୁହଁ ।

କେଉଁ ଧାରା ଅନୁସାରେ ମୋର ବିଜ୍ଞାମି ବନ୍ଧୁ (learned friend) ମୋପ୍ରତି ଏପରି ମନ୍ତବ୍ୟ କଲେ ଜାଣିପାରେ କି ? ମୁଦେଇ ଓକିଲ ସବିନୟେ ପଚାରିଲେ । ପ୍ରଶ୍ନ ପଚାରିବାର ଭଙ୍ଗୀଟି ଅପୂର୍ବ, ନିଛକ୍ ଜ୍ଞାନ ଆହରଣପାଇଁ ଉତ୍ସୁକ ହୋଇ ସେ ଯେପରି ଏ ପ୍ରଶ୍ନଟି ପଚାରିଛନ୍ତି ।

କିନ୍ତୁ ମୁଦାଲା ଓକିଲ ଏ ପ୍ରଶ୍ନରେ ଧୈର୍ଯ୍ୟହରାଇ ଦାନ୍ତ ନିକୁଟି କହିଲେ, ତୁମ୍ଭେ ଗୋଟିଏ ଗଧ ।

ଧନ୍ୟବାଦ୍, ଗୁଣସିନା ଚନ୍ଦ୍ରେ ଗୁଣିଆ । ମୁଦେଇ ଓକିଲ ଅତି ବିନୟସହ କହିଲେ ।

ବିରକ୍ତ ହୋଇ କହିଲି, ଆପଣ ପରସ୍ପରକୁ ଚିହ୍ନି ସାରିଲେଣି, ବର୍ତ୍ତମାନ ତେବେ ମକଦ୍ଦମା ଚାଲୁ।

ମକଦ୍ଦମା ଚାଲିଲା। ଜେରା ଚାଲିଲା। ଲେଖା ଚାଲିଲା। ଅକ୍ଷର ସବୁ କ୍ରମେ ସରଳରେଖା ହେବାକୁ ଲାଗିଲେଣି, ସନ୍ଦେହ ହେଲାଣି ପରେ ନିଜ ଲେଖା ନିଜେ ପଢ଼ି ପାରିବି କି ନା।

ଜେରାର ତାନ ମାନ କାଳେ, ପେସ୍‌କାର କହିଲେ, ବିକାଳରେ, ସ୍ୱୀକାରୋକ୍ତିପାଇଁ ଗୋଟିଏ ଆସାମୀ ପଠାଇଛନ୍ତି ଆଜ୍ଞା।

ମୁଣ୍ଡ ଟେକି ଅନାଇ ଦେଖିଲି ସାମନାରେ ଛିଡ଼ା ହୋଇଛି। ଏକ ଅଦ୍ଭୁତ ଜୀବ। ମୁଣ୍ଡର ବାଳଗୁଡ଼ିକ ନୁଖୁରି ଫୁରୁ ଫୁରୁ ହୋଇ ବିଜୁଳି ପଙ୍ଖାରେ ଉଡୁଛି। ଆଖି ଯୋଡ଼ିକ କୋଠରଗତ। ଗାଲ ପଶିଯାଇ ହନୁ ହାଡ଼ ଯୋଡିକ ପର୍ବତ ଚୂଡ଼ା ଭଳି ବାହାରିଛି। ପିନ୍ଧିଛି ଖଣ୍ଡେ ଛିଣ୍ଡା ମଇଳା କନା, ପିଠିରୁ ଫାଳେ ଦିଶୁଛି। ପଞ୍ଜରା ହାଡଗୁଡ଼ିକ ଏତେ ପରିଷ୍କାର ଭାବରେ ଦିଶୁଛି ଯେ ଡ଼ାକ୍ତରୀ ଛାତ୍ରମାନଙ୍କ ପଢ଼ିବାପାଇଁ କଙ୍କାଳ ନ ନେଇ ଏକୁ ନେଲେ ଚଳି ଯାଆନ୍ତା। ଏପରି ଗୋଟିଏ ଜୀବ କାଖରେ ଗୋଟିଏ ଛୁଆ। ଅଣ୍ଟାରେ ତାର ଦଉଡ଼ି, ସେ ଦଉଡିକୁ ଧରିଛି ଗୋଟିଏ ପୁଲିସ୍। ଗୋଟିଏ ହାତରେ ହାତ କଡ଼ି, ତାକୁ ଧରିଛି ଅନ୍ୟ ଜଣେ। ମୋର ଇଙ୍ଗିତରେ ସେମାନେ ଦଉଡ଼ି ଓ ହାତ କଡ଼ି ଖୋଲି ଚାଲିଗଲେ।

ଆସାମୀକୁ ଚାହିଁ ରହିଲି କିଛିକ୍ଷଣ।

ତୋ ନା କଅଣରେ ହେ-ଏ। ରାଗିଯାଇ ପଚାରିଲି।

ମନେ ମନେ କହିଲି, ଆସିଲା ଗୋଟାଏ ଫାଲ୍‌ତୁ କାମ ଘଣ୍ଟାଏ ସମୟ ନଷ୍ଟ ହବ ଏହିକ୍ଷଣି।

ମୋ ନା' ଅଇଣ୍ଠୁ ମଲିକ।

(ସାକ୍ଷ୍ୟ ପ୍ରମାଣ ଆଇନ ଅନୁସାରେ ପୁଲିସ୍‌ମାନେ ବିଶ୍ୱାସଯୋଗ୍ୟ ନୁହନ୍ତି । ତେଣୁ ପୁଲିସ୍ ଅନୁସନ୍ଧାନ କରୁଥିବାବେଳେ କୌଣସି ଆସାମୀ ଯଦି ଦୋଷ ସ୍ୱୀକାର କରେ ତେବେ ତାକୁ ଜଣେ ମ୍ୟାଜିଷ୍ଟ୍ରେଟ ପାଖକୁ ପଠାଇ ଦିଆଯାଏ । କାରଣ ପୁଲିସ୍ ଯଦି କୁହେ ଯେ ଆସାମୀ ଦୋଷ ସ୍ୱୀକାର କରୁଛି ତେବେ ତାହା ବିଶ୍ୱାସଯୋଗ୍ୟ ନୁହଁ ଏବଂ ତେଣୁ ଗ୍ରହଣୀୟ ନୁହଁ । ଜଣେ ମ୍ୟାଜିଷ୍ଟ୍ରେଟ ପାଖରେ କହିଲେ ତାହା ଗ୍ରହଣୀୟ । ମ୍ୟାଜିଷ୍ଟ୍ରେଟ ତାହା ଲେଖି ରଖନ୍ତି ଏବଂ ବିଚାର ଆରମ୍ଭହେଲେ ସେ ସ୍ୱୀକାରୋକ୍ତି ଗ୍ରହଣୀୟ ହୁଏ । କିନ୍ତୁ ସ୍ୱୀକାରୋକ୍ତି ଲେଖିବା ପୂର୍ବରୁ ଆଇନ ଅନୁସାରେ ନାନା ପ୍ରଶ୍ନ ପଚାରିବାକୁ ହୁଏ, ନାନା କଥା ବୁଝାଇବାକୁ ହୁଏ ପୁଲିସ୍ ଭୟରେ ସ୍ୱୀକାରୋକ୍ତିରୁ ଦେଉଛି କି ନା ଜାଣିବାକୁ । ପରେ ଆସାମୀ ବିଚାର ବେଳେ ସେ ସ୍ୱୀକାରୋକ୍ତିରୁ ଓହରିଗଲେ ସ୍ୱୀକାରୋକ୍ତି ଲେଖିଥିବା ମ୍ୟାଜିଷ୍ଟ୍ରେଟକୁ ସାକ୍ଷ୍ୟ ଦେବାକୁ ପଡ଼େ ଏବଂ ଜେରା ମଧ୍ୟ ହୁଏ । ତେଣୁ ସ୍ୱୀକାରୋକ୍ତି ଲେଖିବା ଭାରି କଷ୍ଟକର କଥା । ଆସାମୀ ପୁଲିସ୍ ଅନୁସନ୍ଧାନବେଳେ ଦୋଷ ସ୍ୱୀକାର ନ କଲେ ତେଣୁ ମ୍ୟାଜିଷ୍ଟ୍ରେଟମାନଙ୍କୁ ସୁବିଧା)

ମନରେ ବିରକ୍ତି ଲୁଚାଇ ନରମ ଭାବରେ ପଚାରିଲି କାହେ ଦୋଷ କରିଚୁ ?

ଆଖିରୁ ତାର ଲୁହ ଝରି ପଡ଼ିଲା । କିନ୍ତୁ ଦାନ୍ତ ନିକୁଟି ହସି ସେ ମୁଣ୍ଡ ଟେକାଇ କହିଲା, ହଁ । କହିସାରି ସେ ତାର କୋଳର ପିଲାଟିକୁ ଆହୁରି ଜାକି ଧରିଲା ।

କିଅଣ କରିଥିଲୁ ?

ଚୋରି ଆଜ୍ଞା ।

କିଅଣ ଚୋରି କରିଥିଲୁ ?

ଘଡ଼ି ।

ଘଡ଼ି ? ଘଡ଼ି !!

କାହା ଘରୁ ରେ ?

ପଧାନଙ୍କ ଘରୁ ।

କାହିଁକି ରେ ?

ଉତ୍ତରରେ କେବଳ ତଳକୁ ମୁହଁ ପୋତି ସେ ଠିଆ ହୋଇ ରହିଲା । ଦୁଇବୁନ୍ଦା ଲୁହ କେବଳ ଗଡ଼ି ଆସି ଚଉକିରେ ବସିଥିବା ଓକିଲଙ୍କ କଳାକୋଟ ଉପରେ ପଡ଼ି ଗଳିଗଲା ।

କିନ୍ତୁ ମୋର ବେଳ କାହିଁ ଅପେକ୍ଷା କରିବାକୁ । ପଡ଼ି ରହିଛି ଆହୁରି ଅନେକ କାମ, ବାହାରେ ଅପେକ୍ଷା କରୁଛନ୍ତି ଆହୁରି କେତେ ସାକ୍ଷୀ, ଭିତରେ ଅପେକ୍ଷା କରି ବସିଛନ୍ତି ଓକିଲମାନେ ।

ଆଇନ ଅନୁସାରେ ତାକୁ ବୁଝାଇବାକୁ ଲାଗିଲି, ତୋର ଦୋଷ ସ୍ୱୀକାର କରିବା ଦରକାର ନାହିଁ । ଦୋଷ ସ୍ୱୀକାର କରିବାକୁ କେହି ତୋତେ ବାଧ୍ୟ କରିପାରିବେ ନାହିଁ । ମୁଁ ଜଣେ ମ୍ୟାଜିଷ୍ଟ୍ରେଟ ଏବଂ ତେଣୁ ମୋ ପାଖରେ ଦୋଷ ମାନିଲେ ତାହା ତୋ ବିପକ୍ଷରେ ଯିବ, ତୁ କାହାରିକି ଭୟ କରନା ଇତ୍ୟାଦି ଇତ୍ୟାଦି ।

କିନ୍ତୁ ଲୋକଟିର ଗୋଟିଏ ମାତ୍ର କଥା, ଆଜ୍ଞା ମୁଁ ଚୋରି କରିଛି । ଉତ୍ତର ଶୁଣି ମନେ ମନେ କହିଲି, ହ୍ୟାପ, ଆସିଲା ଗୋଟିଏ ଯୁଧିଷ୍ଠିର ମୋତେ ହଇରାଣରେ ପକାଇବାକୁ ଏଇକ୍ଷଣିକା ଘଣ୍ଟାଏ ଧରି ନାନା ପ୍ରଶ୍ନ ଲେଖ ଏବଂ ଲେଖ ତାର ଉତ୍ତର ।

ରାଗ ଯାଇ ପଡ଼ିଲା ପେସ୍କାର ଉପରେ । ଛିଡ଼ା ହୋଇଛନ୍ତି କଅଣ । ଆଣନ୍ତୁ ନା ସ୍ୱୀକାରୋକ୍ତି ଫାରମ ।

ପେସ୍କାର ତରବର ହୋଇ ଫାରମ ଦେଲେ । ଘଣ୍ଟାଏ ଧରି ଲେଖିଲି ନାନା ପ୍ରଶ୍ନ ଏବଂ ତାର ଉତ୍ତର ।

ଲେଖିସାର କାଗଜ ଫୋପାଡ଼ ଦେଇ ଡାକଲ ପୁଲସବାଲ-ମାନଙ୍କୁ । କହିଲ ଦେଖିଯାଅ, କାଲ ଫେର୍ ଆଣିବ । ଆଜ ତାକୁ ବୁଝାଇଲ ସବୁ । ସେ ଚନ୍ଦ୍ରାକର କାଲ କହିବ ।

ଆଜ୍ଞା, ଆଉ ଭାବିବ କଅଣ । ଭେକରେ କର ପକେଇଚ । ଏଇଥିର ମା ଭେକ ସମ୍ଭାଳ ନ ପାର ବେକରେ ଦଉଡ଼ି ଦେଇ ମଲ । ଏଇଥିପାଇଁ···ତଳକୁ ମୁହଁ ପୋତି ସେ ଛୁଆଟା ହେଲ ।

ହଉ ଯା ଯା, କାଲ ଆସିବୁ—କହି କେସ୍‌ରେ ମନ ଦେଲ ।

ପୁଲସବାଲମାନେ ତାକୁ ବାନ୍ଧି ଟାଣି ନେଇଗଲେ । ଅତି କାକୁତି ମିନତିରେ ସେ କହିଲ, ବାବୁ, ଯାହା ଦଣ୍ଡ ଦେବାର ଦେଇ ଦିଅନ୍ତୁ । ମୁଁ ଆଉ ଘୋଷରା ହୋଇ ପାରିବ ନାହିଁ ।

ଆରେ, ବିରକ୍ତ ହୋଇ କହିଲ, ତୁ ଆଇନ୍ ବୁଝୁନାହୁ କରେ । ମୁଁ ଦଣ୍ଡ ଦେବା ଲୋକ ନୁହଁ । ତୋ ମକଦ୍ଦମା ମୁଁ ବିଗ୍ଭର କର ବସି ନାହିଁ । ତୋ ମକଦ୍ଦମା ବିଗ୍ଭର କରିବେ ଅନ୍ୟ ମ୍ୟାଜିଷ୍ଟ୍ରେଟ । ମୁ ଖାଲ ତୁ ଯାହା କହିବୁ ଲେଖି ଦେବ । ଯା, ଯାଃ, ମୋର ସମୟ ନଷ୍ଟ କରନା ।

ଆଖି ପୋଛୁ ପୋଛୁ ସେ ଗ୍ଭଲଗଲ । ମନଟା ଟିକିଏ ଉଦାସ ଲଗିଲ । ଅନ୍ୟମନସ୍କ ଭାବରେ କଲମ ଉଠାଇ ବସି ରହିଲ ।

ହଁ, ସେ ତଳେ ପଡ଼ିବା ପରେ ବେହୋସ୍ ହୋଇଗଲ, ନା ବେହୋସ୍ ହୋଇ ତଳେ ପଡ଼ିଗଲ ? ଓକିଲେ ପୂର୍ବ ସାକ୍ଷୀକୁ ଜେରା କରିବାକୁ ଲଗିଲେ । ଚମକ ପଡ଼ି ସାକ୍ଷୀର ଉତ୍ତର ଲେଖିଲ, ମାଡ଼ ଖାଇ ତଳେ ପଡ଼ିବା ଭିତରେ ସେ ବେହୋସ୍ ହୋଇଗଲେ ।

ପୂର୍ବ ଆସାମୀ କଥା ମନରୁ ପୋଛି ଲେଖି ଗ୍ଭଲଲ । ସେ ମକଦ୍ଦମାଟି ଛାଡ଼ି ଅନ୍ୟ ଗୋଟିଏ ମକଦ୍ଦମା ଧରିଲ ।

ଧୂରନ୍ଧର ସାହୁ ହାଜର ହେ, ଧୂରନ୍ଧର ସାହୁ ହାଜର ହେ, ଧୂରନ୍ଧର ସାହୁ ହାଜର ହେ, ଗମ୍ଭୀର ନିନାଦରେ ଚପରାସି ଡ଼ାକ ଛାଡ଼ିଲା ।

ହଁ, ହଁ ହେ, କହି ଭିତରକୁ ପଶି ଆସିଲା ଜଣେ । ନାଁ ସହିତ ଖାପ ଖାଇବା ଚେହେରାଟିଏ । କାଗଜ ପତ୍ର ପଢ଼ି ଚୋର ଦଫାରେ ଅଭିଯୁକ୍ତ କରି ପଚାରିଲା, ଗତ···ତାରିଖରେ ଅଳମ୍ବୁଷା ପୁରରେ ରାତ୍ର ଅନ୍ଦାଜ ବାରଟା ସମୟରେ ତୁମ୍ଭେ ପଦନ ସାହୁର ଜମିରୁ ଅନ୍ଦାଜ ପାଞ୍ଚଶତ ଟଙ୍କାର ଧାନ ଚୋରି କରିଥିବାରୁ ୩୭୯ ଦଫାରେ ଅଭିଯୁକ୍ତ । ତୁମ୍ଭେ ଦୋଷୀ ନା ନିର୍ଦ୍ଦୋଷ ?

ନିର୍ଦ୍ଦୋଷ ।

ଚମକି ପଡ଼ି ଚାହିଁଲି ତା ଆଡ଼େ । କାଗଜପତ୍ର ପଢ଼ି ଦେଖିଲି ଯେ ପ୍ରମାଣର ଅଭାବ ନାହିଁ । ହାତେ ହାତେ ଧରା ହୋଇଚି । ଘରୁ ଧାନ ବାହାରିଚି । ଜମି ପଦନ ସାହୁର ବୋଲି ମଧ୍ୟ ଯଥେଷ୍ଟ ପ୍ରମାଣ ଅଛି । ତଥାପି ଲୋକଟା କେଉଁ ସାହସରେ କହେ ସେ ନିର୍ଦ୍ଦୋଷ ! ବିରକ୍ତ ଲାଗିଲା । ମନଟା ଏକଦମ୍ ଖପା ହୋଇଗଲା । ଦୋଷଟା ମାନି ଯାଇଥିଲେ ଗୋଟାଏ ମକଦ୍ଦମା ମୋ ପାଖରୁ କମିଯାଇ ଥାଆନ୍ତା । ଅଥଚ ବର୍ତ୍ତମାନ ମିଛରେ ମୋତେ ଗୁଡ଼ାଏ ସାକ୍ଷୀର ଜମାନବନ୍ଦୀ କେତେ ଲେଖି ହାତ ବଥେଇବାକୁ ପଡ଼ିବ । ଯେତେ ସବୁ ଧୂର୍ତ୍ତ, ପାଜି, ବଦ୍‌ମାସ ।

ଆଜ୍ଞା, ମୋ ବାପ ଚଉଦ ପୁରୁଷର ଜମି ସେ, ତା ଜମି ନୁହଁ ।

ବନ୍ଦକର ତୁମର କଥା । ମକଦ୍ଦମା ବିଚାର ଚାଲିବ, ତା ପରେ ମୁଁ ବୁଝିବି କାହାର ଜମି । ତୁମକୁ ସେ କଥା କହିବାକୁ ପଡ଼ିବ ନାହିଁ ।

ଆଜ୍ଞା, ମୁଁ ସେ ଜମି କଣିଚ ତାର ବାପ ପାଖରୁ ନଗଦ ହଜାରେ ଠନ୍ ଠନ୍ ଗଣି ଦେଇ, ହେଇ ଦେଖନ୍ତୁ କବଲା । ମୁହେଇ ଆଗେଇ ଆସି ଟେବୁଲ ଉପରେ କବଲା ପତ୍ର ଥୋଇଦେଲା ।

ଉଠାଅ ଏସବୁ, ଉଠାଅ, ରାଗିଯାଇ ଗର୍ଜି ଉଠିଲି । ବର୍ତ୍ତମାନ ସେସବୁ ଦେଖିବାର ସମୟ ନୁହଁ ସାକ୍ଷିମାନେ ଆସିଲେ ସେ ସବୁ କାଗଜ ପ୍ରମାଣ କରାଇବ । ତୁମେ ସବୁ ବାଡ଼ଆପିଠା ଲଗାଇଚ ଗାଁରେ ସାମାନ୍ୟ ଜମିପାଇଁ ।

ମକଦ୍ଦମା ଶେଷକରି ଫେରିବାକୁ ଉତ୍କୁର ହୋଇଗଲି । କ୍ଲାନ୍ତ ଦେହକୁ ଆରାମ ଚୌକିରେ ଥୋଇଦେଇ ଖବର କାଗଜ ପଢ଼ି ବସିଲି । ଟେବୁଲ ଉପରେ ଥୁଆ ହୋଇଥିବା ମୋର ଦାମିକା କଲମଟି ଉପରେ ନଜର ପଡ଼ିଯିବାରୁ ଦେଖିଲି ସେ ଭଙ୍ଗା ହୋଇ ଥୁଆ ହୋଇ ରହିଚି ।

ଚୂଡ଼ାନ୍ତ କ୍ରୋଧୋଦ୍ଦୀପକ ବ୍ୟାପାର । ଗର୍ଜି ପଚାରିଲି, ଶୁଣୁଚ, ମୋର କଲମ ଭାଙ୍ଗିଲା, କିଏ ?

ଗୃହିଣୀ ଦଉଡ଼ି ଆସି ଭୟରେ ହାଁ କରି ଚାହିଁ ରହିଲେ ।

କିଏ କଲା ଏମିତି, ମୁଁ ଜାଣିବାକୁ ଚାହେଁ ଏହିକ୍ଷଣି, ବର୍ତ୍ତମାନ, ଅଭି । ଜଷ୍ଟ୍ ନାଓ, ଚୁରିକାଠ ମେଲାଇ ଶୋଇବା ଛଡ଼ା ଘରେ ରହି କଅଣ କରୁଚ ତୁମେ ଶୁଣେ, ଶୁଣେ ଟିକିଏ ?

ଭୟରେ ଗୃହିଣୀ କହିଲେ ବାପୁନ ତ ଆସିଥିଲା ଏ ଘରକୁ । ବାପୁନ, ବାପୁନ, ଆସିଲୁ ଇଆଡ଼େ ! ବଦମାସ ଟୋକା ! ଗୃହିଣୀ ସଗର୍ଜନେ ଡାକିଲେ ।

ମୋର ପାଞ୍ଚବର୍ଷର ପୁଅ ବାପୁନ ଡେଇଁ ଡେଇଁ ଦୌଡ଼ି ଆସିଲା ହସ ହସ ମୁହଁରେ । ମୋ ହାତରେ କଲମ ଦେଖି ସେ ଭୟରେ ବୋଉକୁ ତାହାର ଜାବୁଡ଼ି ଧରିଲା ।

ତୁ ଭାଙ୍ଗିଚୁ ଏ କଲମ ? ଗର୍ଜିଲି ।

ହଁ, ମୁଣ୍ଡ ଟୁଙ୍ଗାରି ପୁଅ ଉତ୍ତର ଦେଲା, ଆଈ ପାଖକୁ ଚିଠି ଲେଖୁଥିଲି ସେଥିରେ ହାତରୁ ଖସି ପଡ଼ି ଭାଙ୍ଗିଗଲା ।

ହାତ ଟେକି ମାରିବାକୁ ଯାଉଥିଲି । କିନ୍ତୁ ମନେ ପଡ଼ିଗଲା ଜର୍ଜ ୱାଶିଂଟନଙ୍କ କଥା । ସେ ମଧ୍ୟ ପିଲାବେଳେ ଏମିତି ସତ କହିଥିବାରୁ ତାଙ୍କର ପିତା କହିଥିଲେ ସେ ଦିନେ ବିଖ୍ୟାତ ଲୋକ ହେବ । ମୋର ପୁଅ ସତ କହିଚି । ସେ ମଧ୍ୟ ଦିନେ ବିଖ୍ୟାତ ହେବ । କୁଳ ଉଜ୍ଜ୍ୱଳ କରିବ, ନିଶ୍ଚୟ କରିବ । ଆଶାରେ ମୋର ଆଖି ଉଜ୍ଜ୍ୱଳ ହୋଇ ଉଠିଲା । ଆଦରରେ ତାକୁ କୋଳକୁ ଟାଣି ନେଇ କହିଲି, ବାପା, କେବେହେଁ ମିଛ କହିବୁ ନାହିଁଟି ।

ବାପୁନର ସତ୍ୟ କହିବାରେ ମୁଁ ଆଜି ଗର୍ବିତ । କିନ୍ତୁ ଆଖି ଆଗରେ ଭାସିଗଲା ଅଇଣ୍ଠୁ ମଳିକର ଚେହେରା । ତା ପାଇଁ ମୁଁ ଦା ଦେଖି କଅଣ ଗର୍ବ ଅନୁଭବ କରୁଚି, ସେ ସତ କହିଚି ବୋଲି ?

ମୋର ତିନି ବର୍ଷର ଝିଅ ଦୌଡ଼ି ଆସି କହିଲା, ବୋଉ ମୁଁ ସର ଖାଇନି ।

ତାର ନାଲି ପାତଳା ଓଠର ଦୁଇ କଣରେ ଲାଗି ରହିଚି ସର । ଆମେ ଏ ଘରେ ଥିବାବେଳେ କେତେବେଳେ ସେ ଲୁଚି ରୋଷେଇ-ଶାଳକୁ ପଶି ଦୁଧ ହାଣ୍ଡିରୁ ସର ଲୁଚାଇ ଖାଇ ଆସିଲାଣି । ପ୍ରମାଣ ତାର ଅଙ୍ଗରେ ଲାଗି ରହିଚି, ତଥାପି ସେ କହୁଚି ମୁଁ ସର ଖାଇନି ବୋଉ !

ବୋଉ ତାର ରାଗିଯାଇ କହିଲେ, ଇଲୋ, ମୁଁ କଅଣ କରିବି ଲୋ । ପୋଡ଼ାମୁହିଁ, ହାଣ୍ଡି ଖାଇ ସବୁ ସରତକ ଖାଇଗଲା ।

ମୁଁ ସବୁ ଖାଇନାହିଁ, କହି ବୋଉର ଅଭିଯୋଗ ପ୍ରତି ଭ୍ରୂକ୍ଷେପ ନ କରି ମୋ ଆଡ଼େ ଆଗେଇ ଆସିଲା, ହାତ ଟେକି ।

କୋଳକୁ ଉଠାଇ ନେଇ ଚୁମ୍ବନ ପରେ ଚୁମ୍ବନ ଦେଇ କହିଲି, ନା କିଏ କହିଲା ତୁ ଖାଇଚୁ । ମିଛ କଥା । ତୋ ମୁହଁରେ କିଏ ସବୁ ଲଗାଇ ଦେଇଚି ତୋତେ ଦୋଷୀ କରିବାକୁ ।

ଭାଇନା, ଭାଇ ଆଡ଼କୁ ଆଙ୍ଗୁଠି ଦେଖେଇ ମୁହଁ ଫୁଲାଇ କହିଲା ମିନି ।

ସତେ, ସତେ ଭାରି ବଦମାସ ସେ, ମାଡ଼ ଖାଇବ ।

ଆମର ଜୀବନ ଷାଠିଏ କି ସତୁରିବର୍ଷ ମଧ୍ୟରେ ପ୍ରଥମ ସାତ ବର୍ଷ ଆମେ ଧରି ନେଇଚୁ ଅଜ୍ଞାନମୟ ଏବଂ ସେଇଥିପାଇଁ ଆମେ ଦଣ୍ଡବିଧି ଆଇନର ୮୨ ଦଫାରେ କହିଚୁ ସାତ ବର୍ଷର ତଳ ବାଳକ ଯେକୌଣସି ଅପରାଧ କଲେ ମଧ୍ୟ ସେ ଦଣ୍ଡନୀୟ ନୁହେଁ । ଆମର କୋଟି କୋଟି ବର୍ଷ ଯାହାଙ୍କ ନିକଟରେ ଗୋଟିଏ ମୁହୂର୍ତ୍ତ, ତାଙ୍କର ଦଣ୍ଡବିଧି ଆଇନରେ ଆମ ଜୀବନର କେତେ ବର୍ଷ ଅଜ୍ଞାନ-ମୟ ବୋଲି ଧରା ହୋଇଚି କିଏ ଜାଣେ ?



# ଝରାଫୁଲ

(ଏ ଘଟଣା ସମ୍ପୂର୍ଣ୍ଣ କାଳ୍ପନିକ, କୌଣସି ବାସ୍ତବ ଘଟଣା ଉପରେ ଲିଖିତ ନୁହେଁ—ଲେଖକ)

ଏ ଦୁନିଆ ଗୋଟାଏ ରଙ୍ଗମଞ୍ଚ ଏବଂ ଆମ୍ଭେମାନେ ସମସ୍ତେ ସେଥିରେ ଅଭିନେତା ବା ଅଭିନେତ୍ରୀ—ଇତି, ସେକ୍ସପିଅର । ଏ ଉକ୍ତିରେ ଗୋଟାଏ ମହାନ୍ ଦାର୍ଶନିକ ସତ୍ୟତା ଥାଇପାରେ । କିନ୍ତୁ ସୁଧୀନ୍ଦ୍ର ବାବୁ—ଡାକ୍ତର ସୁଧୀନ୍ଦ୍ର ଚମ୍ପଟିରାୟ, ଡି. ଏଚ୍. ଓ., ସଂକ୍ଷେପରେ "ଡ଼ୋ", ଅର୍ଥାତ୍ ଜିଲ୍ଲା ସ୍ୱାସ୍ଥ୍ୟ ବିଭାଗ ଅଫିସର—ବର୍ତ୍ତମାନ ସେ ଦାର୍ଶନିକ ମାନସିକ ଅବସ୍ଥାରେ ନାହାନ୍ତି । ଯେଉଁ ଅବସ୍ଥାର ସମ୍ମୁଖୀନ ସେ ହୋଇଛନ୍ତି ସେଥିରେ ସେ ପାଗଳ ହୋଇଯିବା ଖୁବ୍ ସମ୍ଭବ । ଦଶଦିନ ହେଲା ତାଙ୍କୁ ନିଦ ନାହିଁ, ଖିଆପିଆ ସେ ଛାଡି ସାରିଲେଣି । ବିଧାନ ସଭାରେ ତାଙ୍କର କାର୍ଯ୍ୟ-କଳାପ ବିଷୟରେ ପ୍ରଶ୍ନର ଝଡ ବୋହି ଯାଉଛି ଏବଂ କେତେକ ସଭ୍ୟ ମଧ୍ୟ ତୀବ୍ର କଟୂକ୍ତି ପ୍ରକାଶ କରି ସାରିଲେଣି । ସରକାରୀ ଦଳର ସଭ୍ୟମାନେ ଅବଶ୍ୟ ତାଙ୍କର କାର୍ଯ୍ୟକୁ ସମର୍ଥନ କରି ବକ୍ତୃତା ଦେଉଛନ୍ତି, କିନ୍ତୁ ବିରୋଧୀ ଦଳର ସଭ୍ୟମାନେ କହନ୍ତି, ତାହା ସମ୍ବିଧାନ ବିରୋଧୀ । ତାଙ୍କର ଉପରିସ୍ଥ କର୍ମଚାରୀ

ତାଙ୍କର କୈଫିୟତ ତଲବ କରନ୍ତି । ବହୁଗୀୟ ସର୍ବୋଚ୍ଚ କର୍ମକର୍ତ୍ତା ନିଜେ ପରିଦର୍ଶନରେ ଆସୁଛନ୍ତି । ସୁଧୀନ୍ଦ୍ର ବାବୁ ଘ୍ଲେଣିରେ ପଡ଼ିଛନ୍ତି । ସମସ୍ତ ପୃଥିବୀ ଉପରେ ତାଙ୍କର ବିରକ୍ତି ଆସିଗଲାଣି । ତାଙ୍କର ସର୍ବଦା ଚଢ଼ ଚଢ଼ ଭାବ ଦେଖି କୌଣସି ନିମ୍ନସ୍ଥ କର୍ମଚାରୀ ତାଙ୍କ ନିକଟକୁ କୌଣସି କାଗଜପତ୍ର ନେଇ ଯିବାକୁ ସାହସ କରୁ ନାହାନ୍ତି, ଚପରାସୀ ହାତରେ ପଠାଇ ଦେଉଛନ୍ତି । ସେ ସବୁ ଗୋଟିକ ଉପରେ ଗୋଟିଏ ଜମା ହୋଇ ଘରର ଖୁଣ୍ଟି ରୂପେ କାର୍ଯ୍ୟ କରୁଛନ୍ତି । ଯେଉଁ କର୍ମ ପ୍ରବଣତା ଓ ଆଦର୍ଶ ନେଇ ସେ କାର୍ଯ୍ୟଭାର ଗ୍ରହଣ କରିଥିଲେ, ଯେଉଁ ଶାନ୍ତ ବ୍ୟବହାର ଯୋଗୁଁ ସେ ସମସ୍ତଙ୍କର ପ୍ରିୟ ହୋଇ ଉଠିଥିଲେ ସେ ସବୁ ମିଳାଇ ଗଲାଣି ।

ସୁଧୀନ୍ଦ୍ର ବାବୁ ପେନ୍‌ସିଲ୍ କାମୁଡ଼ୁଛନ୍ତି । ଭାବୁଛନ୍ତି ଉପାୟ କଅଣ ! କପରି ଭାବରେ ଏ ଭୟାବହ ଅବସ୍ଥାକୁ ସେ କବଳକୁ ଆଣିବେ ! କୁଡ଼ୁମ୍ବ ଗ୍ରାମର, ଗ୍ରାମର ଅବସ୍ଥା ବଡ଼ ସଙ୍ଗୀନ । ମହାମାରୀରେ ଗ୍ରାମରେ ଏକ ଚତୁର୍ଥାଂଶ ମରିସାରିଲେଣି । କିନ୍ତୁ ଯେତେ ବୁଝାଇଲେ ବି ଲୋକେ ଟୀକା ନେବାକୁ ଅମଙ୍ଗ । ପୁଲିସ ଓ ମାଜିଷ୍ଟ୍ରେଟ ଦୁଇ ଦୁଇଥର ଗଲେଣି ସେ ଗ୍ରାମକୁ ଜବରଦସ୍ତ ଟୀକା ଦେବାକୁ, କିନ୍ତୁ ଦୁଇଥର ଯାକ ସେମାନେ ବିଫଳ ହୋଇ ଫେରିଚନ୍ତି । କାରଣ ସେମାନଙ୍କର ଯିବା ଖବର ପାଇ ଲୋକେ ଘରଦ୍ୱାର ଛାଡ଼ି ଜଙ୍ଗଲରେ ଲୁଚିଲେ । ଅବଶ୍ୟ ଜଣେ ଦୁଇଜଣ ଆଇନ ଅମାନ୍ୟ କରିବାର ଅପରାଧରେ ଦଣ୍ଡିତ ହୋଇ ସାରିଲେଣି, କିନ୍ତୁ ଅନ୍ୟମାନଙ୍କ ଉପରେ ତାହା କୌଣସି ପ୍ରଭାବ ପକାଇ ପାରିନାହିଁ । ଗୋଟିଏ ରାଜନୈତିକ ଦଳର ପୃଷ୍ଠପୋଷକତାରେ ସର୍ବୋଚ୍ଚ ବିଚାରାଳୟରେ ସ୍ୱାଧୀକାର ମାମଲା ଦାଏର ହୋଇ

ସାରିଲାଣି । ଅଳ୍ପଦିନ ଭିତରେ ହୁଏତ ନିର୍ଦ୍ଦେଶନାମା ଆସିବ, ମକଦ୍ଦମା ବିଚାର ଶେଷ ନ ହେବା ପର୍ଯ୍ୟନ୍ତ ଟୀକା ଦେବାର ଚେଷ୍ଟା ସ୍ଥଗିତ ରଖାଯାଉ ଏବଂ ଉକ୍ତ ସମୟ ମଧ୍ୟରେ କୁଜୁମ୍ବର ବାକି ଲୋକେ ଇହଧାମ ଛାଡ଼ି ଚାଲିଯିବା ମଧ୍ୟ ଅସମ୍ଭବ ନୁହଁ । ସୁଧୀନ୍ଦ୍ର ବାବୁଙ୍କ ଜିଦ୍ ହୋଇଗଲାଣି ସେ ନିଶ୍ଚୟ କୌଜୁମ୍ବମାନଙ୍କୁ ଟୀକା ଦେବେ, ସେମାନଙ୍କୁ ଏପରି ଅସହାୟ ଭାବରେ ମରିବାକୁ ଦେବେ ନାହିଁ ।

କୁଜୁମ୍ବ ଗ୍ରାମକୁ ଆପଣ କୌଣସି ମାନଚିତ୍ର ବା ଭୂଗୋଳ ବହିରେ ଖୋଜିଲେ ପାଇବେ ନାହିଁ । ଜିଲ୍ଲାର ଯେ କୌଣସି ପୁରୁଣା ବୟସ୍କ ଲୋକଙ୍କୁ ପଚାରନ୍ତୁ ସେ କହିବ, ହେ···ଏ···ଏ···ଏହି ଯେଉଁ···ତାର ଅଙ୍ଗୁଳିର ନିର୍ଦ୍ଦେଶ ଅନୁସାରେ ଯାଆନ୍ତୁ, ଦେଖିବେ ସାମନାରେ ପର୍ବତର ପ୍ରାଚୀର । ପର୍ବତର ଶୋଭା ଅତି ରମଣୀୟ । କିନ୍ତୁ ପର୍ବତର ପାଦ ଦେଶରେ ଛିଡ଼ା ହୋଇ ତାକୁ ଚିତ୍କାର କରି ଗାଳି ଦେଇ ଆପଣ ଫେରିବାକୁ ବାଧ୍ୟ ହେବେ । ଅନ୍ୟ କେହି ହୁଏ ତ ଆପଣଙ୍କର ଉତ୍କଣ୍ଠିତ ପ୍ରଶ୍ନର ଉତ୍ତର ନିର୍ବିକାର ଭାବରେ ଦିବ, ମୁଁ ନାହିଁ ଜାଣେ ନା ଆ ଆ··· । ସେଥିରେ ଆପଣ ଗାଳି ଦିବାର ପ୍ରଥା ବା ଭାଷା ବଦଳାଇ ପାରିବେ ନାହିଁ । କିନ୍ତୁ ଆପଣ ଯଦି ସରକାରୀ ନଥିପତ୍ରର କୀଟ ହୋଇ ରେକର୍ଡ଼ ଘରେ ଅନେକ ଦିନ ସପରିବାର ବସବାସ କରିବେ ତେବେ ଗୋଟିଏ ବିରାଟ ଆକାର ଶେଷ ସ୍ତରର ଶେଷକୁ ଗୋଟିଏ ବହିରେ କୁଜୁମ୍ବ ଗ୍ରାମ ବିଷୟରେ ସବୁ ଦରକାରୀ ସମ୍ବାଦ ପାଇ ପାରିବେ । ସେଠା ହବ ପୁସ୍ତକଗତ ବିଦ୍ୟା, ପୋଥିବାଇଗଣ । ଉକ୍ତ ଗ୍ରାମକୁ ଯିବାର ଯେଉଁ ବାସ୍ତବ-ଜ୍ଞାନ ଦରକାର ତାହା ସୁଧୀନ୍ଦ୍ର ବାବୁ ଏ ପର୍ଯ୍ୟନ୍ତ କାହାରିଠାରୁ ପାଇ ନାହାନ୍ତି ।

ଦିନେ ହଠାତ୍ ଖବର ଆସିଲା କୁଡୁମ୍ବରେ ଭୀଷଣ ଭାବରେ ହଇଜା ଲାଗିଛି, ସୁଧୀନ୍ଦ୍ର ବାବୁ ଧଡ଼ପଡ଼ ହୋଇ ଉଠିଲେ ସେ ଗ୍ରାମକୁ ଯିବାକୁ । ବାଟ ଦେଖାଇବାକୁ କେହି ନାହିଁ । ଖାଲି ଗୋଟାଏ ଅସ୍ପଷ୍ଟ ଠିକଣା—କୌଣସିମତେ ଯୋଗାଡ଼ କରି ସେ ଚାଲିଲେ । ଖଣ୍ଡେ ବାଟ ମଟରରେ ଯିବା ପରେ ସେ ଓହ୍ଲାଇ ପଡ଼ିଲେ । ତା ପରେ ଚାଲୁଛନ୍ତି ତ ଚାଲୁଛନ୍ତି । ପୂରା ସାତଗୋଟି ଘଣ୍ଟା ଚାଲିବା ପରେ ସେ ପହଞ୍ଚିଲେ ଗୋଟିଏ ପର୍ବତର ପାଦ ଦେଶରେ । ସେଠି ଗୋଟିଏ ଗଛତଳେ କିଛି ସମୟ ବସି ଝରଣା ପାଣି ପିଇ ସେ ପର୍ବତ ଆରୋହଣ କରିବାକୁ ଲାଗିଲେ । ପାହାଡ଼ଟି ଡେଇଁ ଆର ପାଖରେ ସେ ଅଗନାଗିନ୍ନ ବନସ୍ତରେ ପ୍ରବେଶ କଲେ । ପିଲା ଦିନର ଗୋସିମାଙ୍କ କାହାଣୀ ସବୁ ସ୍ୱତଃ ତାଙ୍କ ମନକୁ ଫେରି ଆସିଲା । ପ୍ରତ୍ୟେକ ପଦକ୍ଷେପରେ ସେ କୌଣସି ରାଜକନ୍ୟା ବା ରାକ୍ଷସର ଆବିର୍ଭାବ ଆଶା ବା ଆଶଙ୍କା କରିବାକୁ ଲାଗିଲେ । କିନ୍ତୁ କିଛିଦୂର ଯିବା ପରେ ଗୋଟିଏ କନ୍ଧର ଦେଖା ମିଳିଲା, ସେ କହିଲା, ହେ ଘାଟିର ତେନ୍ ପାରେ କୁଡୁମ୍ବ···ସୁଧୀନ୍ଦ୍ର ବାବୁ ମୁଣ୍ଡରେ ହାତ ଦେଇ ବସି ପଡ଼ିଲେ । ସେ ରାତିକ ସେ ବିଶ୍ରାମ ନେଲେ ଗୋଟିଏ କନ୍ଧ ଘରେ । ତା ପର ଦିନ ପୁଣି ଯାତ୍ରା ଆରମ୍ଭ କଲେ ।

କୁଡୁମ୍ବ ଗ୍ରାମଟି ଜଙ୍ଗଲ ମଝିରେ ଗୋଟିଏ ନିହାତି ଅସୁବିଧା ଜାଗାରେ ଥିଲେ ମଧ୍ୟ ବଡ଼ ଗାଁଟିଏ । ଅଧିକାଂଶ ଅଧିବାସୀ କନ୍ଧ, ଅନ୍ୟାନ୍ୟ ଜାତିର ଲୋକେ ମଧ୍ୟ ଅଛନ୍ତି । କାହିଁକି ଯେ ଏପରି ଜାଗାରେ ଅଛନ୍ତି, ସେମାନଙ୍କର ଜୀବନର ଉଦ୍ଦେଶ୍ୟ କଣ, ଏ ସବୁ କଥା ଭାବନ୍ତୁ ନାହିଁ । ଚିରତୁଷାରବୃତ ବୃକ୍ଷଲତା ହୀନ ମରୁ ଦେଶରେ ଏସ୍କିମୋମାନେ କାହିଁକି ଅଛନ୍ତି ? ଯିଏ ଯେଉଁଠି ଥାଆନ୍ତୁ, ସର୍ବେ ସୁଖୀନଃ ଭବନ୍ତୁ, ସର୍ବେ ସନ୍ତୁ ନିରାମୟାଃ, ସର୍ବେ ଭଦ୍ରାଣି ପଶ୍ୟନ୍ତୁ ଓ ମାକଶ୍ଚିତ୍ ଦୁଃଖଭାଗ ଭବେତ୍ ।

ସର୍ବେ ସନ୍ତୁ ନିରାମୟାଃ ! କୌଡୁମ୍ବମାନଙ୍କର ନିରାମୟତା କେଉଁ ଉପାୟରେ ସମ୍ଭବ ? ବୁଝାଇ କହିବାକୁ ହେବ ନାହିଁ । ବିରୁଦ୍ଧ ମତର ଲୋକମାନଙ୍କୁ ନିଜ ମତରେ ଆଣିବାକୁ ହେଲେ, ସୁଧୀନ୍ଦ୍ର ବାବୁ ପେନ୍‌ସିଲ କାମୁଡ଼ୁ କାମୁଡ଼ୁ ଭାବୁଚନ୍ତି, ତିନୋଟି ଉପାୟ ଅଛି, ଯଥା—ମାଡ଼ ଦ୍ୱାରା, ଯେପରି କରିଥିଲେ ମହମ୍ମଦ, କିମ୍ବା କିଛି ନ କହି ଗୋଟିଏ ଗାଲରେ ଚାପୁଡ଼ା ମାରିଲେ ଅନ୍ୟ ଗାଲ ଦେଖାଇ, ଯେପରି କରିଥିଲେ ଖ୍ରୀଷ୍ଟ, କିମ୍ବା ବିରୁଦ୍ଧ ମତ ପ୍ରଥମେ ସ୍ୱୀକାର କରି ନେଇ ଧୀରେ ଧୀରେ ଅଗ୍ରସର ହୋଇ ବିରୁଦ୍ଧ ମତକୁ ନିଶ୍ଚିହ୍ନ କରିଦେବା, ଯେପରି ହିନ୍ଦୁ ଧର୍ମ ସବୁ ଧର୍ମକୁ ଗର୍ଭସାତ କରିଚି । ଜଣେ ଆଧୁନିକ ମନୀଷୀ କହିଚନ୍ତି ଯେ କୌଣସି ରାଜନୈତିକ ଦଳ ଯେତେ ବଡ଼ ବଡ଼ ଆଦର୍ଶ ବୋଲୁଭ ଥାଉନା କାହିଁକି ତାର ଅସଲ ଉଦ୍ଦେଶ୍ୟ ଜାଣିବାକୁ ହେଲେ କ୍ଷମତା ପାଇବା ପରେ ସେ କିପରି ବ୍ୟବହାର କରୁଚି ତାହା ଲକ୍ଷ୍ୟ କରିବାକୁ ହେବ ।

ଗଣତାନ୍ତ୍ରିକ ଯୁଗରେ ମହମ୍ମଦଙ୍କ ଉପାୟ ନିଷିଦ୍ଧ । ସେ ଉପାୟ ମଧ୍ୟ ତିନିଥର ବିଫଳ ହେଲଣି । ଗତକାଲି ବିରୋଧୀ ଦଳର ନେତା କୁଡୁମ୍ବ ଯାଇ ଗ୍ରାମର କନ୍ଧମାନଙ୍କ ସଭାରେ ରାତି ନ'ଟା ପର୍ଯ୍ୟନ୍ତ ଗର୍ଜି ଗର୍ଜି ଯାଇଛନ୍ତି, ହେ ଦେଶର ସରଳ ଅଧିବାସୀମାନେ, ତୁମ୍ଭେମାନେ ସର୍ବଦା ଦଳିତ, ଲାଞ୍ଛିତ, ଉପେକ୍ଷିତ, ବଞ୍ଚିତ, ବ୍ରୀଡ଼ିତ, ଅପମାନିତ । ହେ ବୁଭୁକ୍ଷୁ କଙ୍କାଳ ଦଳ, ତୁମ୍ଭେମାନେ ଜାଗ, ଉତ୍ତିଷ୍ଠିତ, ଜାଗ୍ରତ । ଆଉ କେତେଦିନ ମୁହଁ ମାଡ଼ି ପଡ଼ିଥିବ ? କେତେଦିନ ଏ ଅପମାନ ନୀରବରେ ସହ୍ୟ କରିବ ? ଜାଗ, ଜାଗ, ଜାଗ, ତୁମ୍ଭମାନଙ୍କ ନିଶ୍ୱାସରେ ସ୍ୱାଧୀନତାର ଅଗ୍ନି ଚାରିଆଡ଼େ ଜଳି ଉଠୁ ଦାଉ ଦାଉ ହୋଇ । ସେ ନିଆଁରେ ଭସ୍ମୀଭୂତ ହେଉ ଶୋଷକ, ବିଳାସୀ, ଜୁଆଚୋର, ଭାଇ--ପୁଅ--

ଖୋଇଁ--ପାଳକ, ନଜର--କର୍ତ୍ତବ୍ୟ--ନ--କର--ଅପରକୁ--କର୍ତ୍ତବ୍ୟ--ଶିଖାଇବା ସରକାରୀ ଦଳ। ମୁଁ ମୁକ୍ତ କଣ୍ଠରେ ପଚାରୁଛି···ପଚାରୁଛି···ପଚାରୁଛି···କାହିଁକି ଆଜ ତୁମମାନଙ୍କୁ ଟୀକା ଦେବାକୁ ବାଧ କରା ହେଉଛି ? ମୁଁ ପୁଣି ଥରେ ପଚାରୁଛି, କାହିଁକି ତୁମର ଜନ୍ମଗତ ଅଧିକାର ଏପରି ଭାବରେ କାଡ଼ି ନିଆ ହେଉଛି ? କାହିଁକି ତୁମର ମହାନ୍ କୃଷ୍ଟି ଏପରି ଭାବରେ ଭାଙ୍ଗି ଦିଆହେଉଛି ?

ଏ ପ୍ରଶ୍ନର ଉତ୍ତର ଲୋକମାନେ ଦେଇ ସାରିଲେଣି ବିଦ୍ରୋହରେ।

ସେ ସଭାରେ ସୁଧୀନ୍ଦ୍ର ବାବୁ ଉପସ୍ଥିତ ଥିଲେ । ସେ କହିବାକୁ ଚେଷ୍ଟା କରିଥିଲେ ଯେ ଟୀକା ନେଲେ ସ୍ୱାଧୀନତା ଖର୍ବିତ ହେବ ନାହିଁ । ଫଳରେ ସେ ମାଡ଼ଖାଇ ଫେରିଥିଲେ ।

ତାଙ୍କର ନିମ୍ନସ୍ଥ କର୍ମଚାରୀ ତାଙ୍କୁ ଖୁସି କରିବାକୁ ଯାଇ କହିଲେ, ଭଗବାନ ଏ ଲୋକମାନଙ୍କୁ କ୍ଷମା କରନ୍ତୁ, ସେମାନେ କଅଣ କରୁଛନ୍ତି ଜାଣନ୍ତି ନାହିଁ ଏତିକି କହି ସେ ଉପରକୁ ଭାବବିହ୍ୱଳ ଦୃଷ୍ଟିରେ ଚାହିଁ ଛିଡ଼ା ହେଲେ ।

ସୁଧୀନ୍ଦ୍ର ବାବୁ କିନ୍ତୁ ଉତ୍କ୍ଷିପ୍ତ ହୋଇ କହିଲେ, "ସେ ଭଗବାନ୍ ଫଗବାନ୍ ମୋ ପାଖରେ କହିବେ ନାହିଁ ବୁଝିଲେ । ସେମିତି ଭଙ୍ଗୀରେ ଛିଡ଼ା ହୁଅନ୍ତୁ ନାହିଁ, ମୁଁ କହିଦେଉଛି । ଭଗବାନଙ୍କୁ ଏ ଉପଦେଶ ଦେବାକୁ ଆପଣଙ୍କୁ କିଏ ଅଧିକାର ଦେଲା ? ଏଙ୍କ ଉପଦେଶକୁ ଭଗବାନ ଯେମିତି ଚାହିଁ ରହିଛନ୍ତି ! କେଡ଼େ ଧୃଷ୍ଟତା ଦେଖ !" ଭଗବାନ ଯେ ସେ ଲୋକମାନଙ୍କ ଉପରେ ରାଗି ଗଲେଣି ଏ ଯେମିତି ଜାଣି ପାରିଲେଣି ?

ନିମ୍ନସ୍ଥ କର୍ମଚାରୀ ମଧ୍ୟ ମନେ ମନେ କହିଲେ, ଶ୍ରେୟଃ, ହ୍ୟାପ ଭଲ କହିବାରୁ ମନ୍ଦ ହେଉଛି । ପେଟ ପାଇଁ ଟିକିଏ ଖୋସାମଦ କରୁଥିଲି, ନ ହେଲାତ ନାହିଁ । ଆମ ଖୋସାମଦ ଆମ ଘରେ ଥାଉ ।

ହିଂଶାକୁ ଉପାୟ ମଧ୍ୟ ଗ୍ରହଣୀୟ ନୁହଁ । ବସ୍ତୁତଃ ଉପରୋକ୍ତ ଘଟଣା ପରେ ଗ୍ରାମର ଅଧିକାଂଶ ଲୋକମାନଙ୍କ ବିରୁଦ୍ଧରେ ଫୌଜଦାରୀ ମକଦ୍ଦମା ଦାଏର ହୋଇଛି । ସେ ମକଦ୍ଦମାମାନଙ୍କରେ ପୁଲିସ ତରଫରୁ ସେ ପ୍ରଥମ ସାକ୍ଷୀ । ଇଆଡ଼ୁ ମାଇଲେ ଗୋହତ୍ୟା, ସିଆଡ଼ୁ ମାଇଲେ ବ୍ରହ୍ମହତ୍ୟା !

ବିରୋଧୀ ରାଜନୈତିକ ଦଳମାନେ ଏ ପରିସ୍ଥିତିକୁ ଗୋଟିଏ ପ୍ରଥମ ଶ୍ରେଣୀର ରାଜନୈତିକ ସମସ୍ୟା କରି ଛାଡ଼ିଲେଣି ବିଧାନ ସଭାରେ । ଏହାର ସୁଯୋଗ ନେଇ ସରକାରୀ ଦଳକୁ ଗାଦିଚ୍ୟୁତ କରିବାକୁ ଲାଗି ପଡ଼ିଲେଣି । ସରକାରୀ ଦଳ ମଧ୍ୟ ବିରୋଧିଦଳର ନେତାମାନଙ୍କୁ ଜେଲ୍‌ରେ ରଖିସାରିଲେଣି ନାନା ଅପରାଧର ଅଭିଯୋଗ କରି । ଏଥିପାଇଁ ମୁଲତବୀ ପ୍ରସ୍ତାବ ଆଗତ ହୋଇ ବିଧାନସଭାରେ ଖାଲି ତୁମୁଳ ବାଦାନୁବାଦ ନୁହଁ, ମାଡ଼ଗୋଳ ମଧ୍ୟ ହୋଇଗଲାଣି, ଅନେକ ଚୌକି ଟେବୁଲ ମଧ୍ୟ ଭଙ୍ଗା ସରିଲାଣି । ବିଧାନସଭା ନିକଟରେ ସଶସ୍ତ୍ର ପୁଲିସ ଶାନ୍ତି ସ୍ଥାପନ ପାଇଁ ମୁତୟନ୍ ହେଲେଣି । ବିଭିନ୍ନ ରାଜନୈତିକ ଦଳର ବିଚକ୍ଷଣ କର୍ମୀମାନେ କୁଢ଼ୁମ୍ବ ଗ୍ରାମକୁ ଆସିଗଲେଣି । ପ୍ରତ୍ୟେକ ନିଜ ନିଜର ଦଳ ବଢ଼ାଇବାକୁ ଆପ୍ରାଣ ଚେଷ୍ଟା ଲଗାଇଲେଣି । ଏମାନେ ପ୍ରତ୍ୟେକ ଧୁରନ୍ଧର ବ୍ୟକ୍ତି । ସାଧୁ ହେଉ ବା ଅସାଧୁ ହେଉ ଯେ କୌଣସି ଉପାୟରେ ଅନ୍ୟ ଦଳ ଫଟାଇବାରେ ପ୍ରତ୍ୟେକେ ଖ୍ୟାତି ଅର୍ଜନ କରିଛନ୍ତି । ଏତେଗୁଡ଼ିଏ ନେତାଙ୍କର ସମାଗମ ହେତୁ କେତେଦିନ ହେବ କୁଢ଼ୁମ୍ବ ଗ୍ରାମ ସମ୍ବାଦପତ୍ରମାନଙ୍କରେ ପ୍ରଥମ ସ୍ଥାନ ଅଧିକାର କରି ସାରିଛି । ପ୍ରତ୍ୟେକ ନେତାର ଉଦ୍ୟମ ବର୍ତ୍ତମାନ କନ୍ଧମାନଙ୍କୁ ନିଜ ଦଳ ସପକ୍ଷରେ ଏବଂ ବିରୋଧିଦଳ ବିପକ୍ଷରେ ଉତ୍ତେଜିତ କରି ରଖିବା । ମୁଖ୍ୟମନ୍ତ୍ରୀ ସବୁକାମ ଛାଡ଼ି ବର୍ତ୍ତମାନ ଲାଗିଛନ୍ତି ଏଇଥିରେ ।

କୁହା ନାହିଁ, ବୋଲା ନାହିଁ ସାଏଁ କରି ମଟରରେ ସେ ବାହାରି ଯାଉଛନ୍ତି ଦଳର କେନ୍ଦ୍ର ଅଫିସକୁ । ସେଠି ବୈଠକରେ କିଛିକ୍ଷଣ ଗୁପ୍ତ ମନ୍ତ୍ରଣା ସାରି ପୁଣି ଫେରି ଆସୁଛନ୍ତି ନିଜ ଘରକୁ । କିଛି ସମୟ ପରେ ପୁଣି ହଠାତ୍ ମଟରରେ ଗମ୍ଭୀର ଭାବରେ ବସି କୁଆଡ଼େ ଚାଲି ଯାଉଚନ୍ତି । ସଦାସର୍ବଦା ତାଙ୍କ ସରକାରୀ ବାସ ଭବନ ସାମନାରେ ଅନେକ ମଟର ଗାଡ଼ି ଛିଡ଼ା ହୋଇ ରହୁଚି । ପୁଲିସର ସର୍ବୋଚ୍ଚ କର୍ମକର୍ତ୍ତାଙ୍କ ସହିତ ସଦାସର୍ବଦା ମନ୍ତ୍ରଣା ଚାଲିଚି ।

ଆଜ ତିନିଦିନ ପରେ ବିଧାନସଭାରେ ସରକାରୀ ଦଳ ବିରୁଦ୍ଧରେ ଅବିଶ୍ୱାସ ପ୍ରସ୍ତାବ ଆଲୋଚନା ହେବ । ସବୁ ଦଳ ସେଥିପାଇଁ ସଜବାଜ ହେଉଚନ୍ତି । ସୁଧୀନ୍ଦ୍ର ବାବୁ ବଡ଼ ସକାଳୁ କୁଡ଼ୁମ୍ବ ଯାଇ ଯାହା ଦେଖିଲେ ସେଥିରେ ସେ ସ୍ତମ୍ଭୀଭୂତ ହୋଇଗଲେ । ଗ୍ରାମର ଉପାନ୍ତର ପ୍ରକାଣ୍ଡ ପ୍ରକାଣ୍ଡ ପ୍ରାୟ ତିରିଶ ଖଣ୍ଡ ସୈନ୍ୟବୁହା ମଟର ଗାଡ଼ି ରହିଚି । ଅଦୂରେ ଅନେକ ତମ୍ବୁ ଖଟା ହୋଇଚି । ସଶସ୍ତ୍ର ଜଗୁଆଳ ସୈନ୍ୟ ଟହଲ ମାରୁଛନ୍ତି । ମାତ୍ର ଗତକାଲି ସନ୍ଧ୍ୟାବେଳେ ସେ କୁଡ଼ୁମ୍ବରୁ ଫେରିଥିଲେ । ଗୋଟିଏ ରାତି ଭିତରେ ଏତେ କାଣ୍ଡ ଘଟିଯାଇଚି ! କେଉଁବାଟେ ଆସି ପାରିଲେ ଏମାନେ !! ଦୂରରୁ ଦେଖି ସେ ଭାବିଲେ ବୋଧହୁଏ ପୁଣି ମହାଯୁଦ୍ଧ ଲାଗିଗଲାଣି ! ଏ ତଳ ନା ତାଳ ସେ ବୁଝି ପାରିଲେ ନାହିଁ । ତାଙ୍କୁ ସେଠି ଜଣାଇ ଦିଆଗଲା ଆଜ ଦୁଇଦିନ ପରେ ସଶସ୍ତ୍ର ପୁଲିସ ସାହାଯ୍ୟରେ ସମସ୍ତଙ୍କୁ ଟୀକା ଦିଆଯିବ ।

କୁଡ଼ୁମ୍ବ ଗ୍ରାମ ଭିତରକୁ ଯାଇ ଦେଖିଲେ ସରକାରୀ ଦଳର ଜଣେ ସ୍ଥାନୀୟ କର୍ମୀ କେତେକ ଲୋକଙ୍କୁ ନେଇ ଗାଁ ରାସ୍ତାରେ ଗୋଟିଏ ତୋରଣ ସଜାଇଛନ୍ତି । ସୁଧୀନ୍ଦ୍ର ବାବୁଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ଗ୍ରାମର ବାହାରେ ସୈନ୍ୟ ସମାବେଶ ଏବଂ

ଗାଁ ଭିତରେ ଉତ୍ସବର ଆୟୋଜନ ! ସ୍ଥାନୀୟ କର୍ମୀ ଜଣାଇଲେ ଉପମନ୍ତ୍ରୀଙ୍କ ଜନ୍ମଦିନ ପାଳିତ ହେଉଛି ।

ଗ୍ରାମର ଭାଗବତ ଘରେ ମଧ୍ୟ ସଜାସଜି କାମଚାଲିଛି ଆଜି ଗୋଟିଏ ଦଳର କର୍ମୀଙ୍କ ଉଦ୍‌ଯୋଗରେ ।

ଏ କିଅଣ ପାଇଁ ଆଜି ? ସୁଧୀନ୍ଦ୍ର ବାବୁ ସବିସ୍ମୟେ ପଚାରିଲେ ।

କର୍ମୀ ସଗର୍ବେ ଉତ୍ତର ଦେଲେ ତାଙ୍କ ଦଳର ନେତାଙ୍କ ଜନ୍ମ-ଦିବସ ପାଳିତ ହେଉଛି ।

ଏହି ସମୟରେ ଗୋଟିଏ ଦଳ ଜୟଧ୍ୱନି କରି ଉଠିଲେ । ସାଙ୍ଗେ ସାଙ୍ଗେ ଅନ୍ୟ ଦଳ ତାର ଉତ୍ତର ଦେଲେ ଢେଲା ବର୍ଷଣ ଦ୍ୱାରା । ସୁଧୀନ୍ଦ୍ର ବାବୁ ଗୋଟିଏ ଢେଲା ମାଡ଼ଖାଇ ଫେରିଆସିଲେ ।

ଫେରିଆସି ସେ ଜିଲ୍ଲା ହାକିମଙ୍କ ନିକଟରେ କ୍ଷୋଭ ପ୍ରକାଶ କରିଥିଲେ । ଜିଲ୍ଲା ହାକିମ ସେତେବେଳେ ଉନ୍ନୟନ ଯୋଜନା ସଭାରେ ବସିଥିଲେ । ରବିଗଛ ଧାନଜମି ଭିତରେ କି ହିଡ଼ କେତେ କେତେ ଲାଗିବ ଏ ସମସ୍ୟା ଯେତେବେଳେ ଗୁରୁତର ଭାବରେ ଆଲୋଚିତ ହେଉଛି ସୁଧୀନ୍ଦ୍ର ବାବୁ ସେତେବେଳେ କହି ପକାଇଲେ ନିଜ ମନର କ୍ଷୋଭ । ଜିଲ୍ଲା ହାକିମ ଥରେ କ୍ରୂର ଦୃଷ୍ଟି ନିକ୍ଷେପ କରି ଗମ୍ଭୀର ଭାବରେ କହିଲେ, ଶାସନନୀତି ବିଷୟରେ ଆପଣଙ୍କ ଜ୍ଞାନ ଶିଶୁର ଜ୍ଞାନଠାରୁ ଅଧିକ ନୁହଁ ।

ସୁଧୀନ୍ଦ୍ର ବାବୁ ବିଧାନସଭାର ସ୍ଥାନୀୟ ସଭ୍ୟଙ୍କୁ ମଧ୍ୟ ନିଜ ମନ କଥା କହିଲେ । ସେ ସ୍ମିତ ହାସ୍ୟକରି ଉତ୍ତର ଦେଲେ, "ଉଚ୍ଚ-ସ୍ତରର ରାଜନୀତି ଆପଣ ବୁଝି ପାରିବେ ନାହିଁ ।"

ନିରାଶ ହୋଇ ସେ ଘରକୁ ଫେରିଲେ । ନ ଖାଇ ଗମ୍ଭୀର ଭାବରେ ସେ ଖଟ ଉପରେ ପଡ଼ିଯାଇ ଭାବି ବସିଲେ ଏ କ୍ଷେତ୍ରରେ ତାଙ୍କର କର୍ତ୍ତବ୍ୟ କିଅଣ । ଏହି ଅଜ୍ଞ କନ୍ଧମାନଙ୍କୁ ସରଳ ସୁନ୍ଦର

ନିରହଙ୍କାରୀ ମଣିଷ ବୋଲି ସାହିତ୍ୟିକମାନଙ୍କରେ ଏତେ ପ୍ରଶଂସା ହୋଇଚି । କିନ୍ତୁ ଏ ସରଳତାର ସାର୍ଥକତା କଅଣ ? ଏପରି ନିର୍ବୋଧ ସରଳତା ଚିରସ୍ଥାୟୀ ହେବା ଉଚିତ କି ? ଠିକ୍ ଯଦି ନୁହଁ, ସେ ସରଳତାର ପ୍ରଶଂସା ଦୁରଭିସନ୍ଧି ପୂର୍ଣ୍ଣ ନୁହଁ କି ? କିଛିଦିନ ପୂର୍ବେ ଗୋଟିଏ କନ୍ଧ ତାର ଭାଉଜକୁ ଡାଆଣୀ ବୋଲି ଜାଣିପାରି ନିର୍ମମ ଭାବରେ ହତ୍ୟା କରିଚି ! ଆଶ୍ଚର୍ଯ୍ୟ ଏ ସରଳତା !! କୌଣସି ପ୍ରଶ୍ନର ସନ୍ତୋଷଜନକ ଉତ୍ତର ସୁଧୀନ୍ଦ୍ର ବାବୁ ପାଇଲେ ନାହିଁ । କିନ୍ତୁ କଅଣ ଭାବି ସେ ଟିକିଏ ହସିଲେ । ଧଡ଼ପଡ଼ ହୋଇ ଉଠି ବସି ସେ ପାଟିକରି ଡ଼ାକିଲେ, ହେଏ, ଶୁଣୁଚ । ଶୀଘ୍ର ଭାତ ଦବଟି, ମୁଁ ବର୍ତ୍ତମାନ ଏକ୍ଷଣି ଗୋଟାଏ ଜାଗାକୁ ଯିବି କିଛି କିଣିବାକୁ । ଏ ଶ୍ୟାମା, ବନ୍ଧଣାପଣ ଜଲଦି ବାନ୍ଧି ଦେ ।

ଗୃହିଣୀ ଆଶ୍ଚର୍ଯ୍ୟ ହୋଇ ଗୃହିଁ ରହିଲେ ।

ସୁଧୀନ୍ଦ୍ର ବାବୁ ହସି କହିଲେ, କାମ ସରୁ, ମୋର ଉଦ୍ଦେଶ୍ୟ ସାଧିତ ହେଉ, ସବୁ କହିବି । ଦିଅ, ଭାତ ଦବଟି ଶୀଘ୍ରେ । ଏ ଶ୍ୟାମା, ଆମ ନୂଆ ଗ୍ରାହକରାଣୀକୁ ଡାକିଦେ ଆଗେ, ବନ୍ଧଣାପଣ ଥାଉ ।

ତରତର ହୋଇ ଦହିଗୁଣ୍ଡା ଭାତ ଠାଉ ଠାଉ କରି ଗିଳି-ଦେଇ ସେ ବାହାରି ପଡ଼ିଲେ ।

ଦୁଆର ମୁହଁରେ ବସିଚି ଗୋଟିଏ ଲୋକ ।

କିଏ ତୁମେ ? ସୁଧୀନ୍ଦ୍ର ବାବୁ ବିରକ୍ତ ହୋଇ ପଚାରିଲେ ।

ଆଜ୍ଞା ମୋର ନାଁ ସୁକୁପିଲି କନ୍ଧ, ମୋ ଘର କୁଡ଼ୁମ୍ବ ।

କୁଡ଼ୁମ୍ବ ନାଁ ଶୁଣି ସୁଧୀନ୍ଦ୍ର ବାବୁ ଉତ୍‌କ୍ଷିପ୍ତ ହୋଇ ଉଠିଲେ । ଚିତ୍କାରକରି କହିଲେ, କିକାଲେ ।

ଗୋଡ଼ଧରି ପକାଇ ସୁକୁପିଲି କହିଲା, ଆଜି ସକାଳୁ ମୋର କନିଆକେ ଚିନ୍ଟା ଝାଡ଼ା ହୋଇଚି ।

ସୁଧୀନ୍ଦ୍ର ବାବୁ ବିଜ୍ଞ ପରାମର୍ଶ ଦେବାର ଛଳନାକରି କହିଲେ, ତୁ ତେବେ ଗୋଟାଏ କାମକର, ଔଷଧରେ ତାର କିଛି ହେବ ନାହିଁ । ମା ତମ ଗାଁକୁ ବିଜେ କରିଛନ୍ତି । ତୁ ଯା, ତୋର କନିଆକୁ ହଳଦି ମଖାଇ, ତମର ଯେଉଁ ବଡ ପୋଖରୀ ଅଛି, ଯେଉଁଥିରେ ତମର ସବୁ ଗାଈଗୋରୁ ଗାଧାନ୍ତି, ହଇଜା ରୋଗୀର ଲୁଗାପଟା କାଚୁଛନ୍ତିଏ, ଆଉ ତୁମେମାନେ ପିଇବାପାଣି ନଅ, ସେଇ ପୋଖରୀରେ ତାକୁ ଗାଧୋଇ ଆଣିବୁ । ତାପରେ ମୁଣ୍ଡରେ ସିନ୍ଦୂର ଲଗାଇ, ନୂଆଲୁଗା ପିନ୍ଧାଇ ତାକୁ ବସାଇବୁ । ଗୋଟିଏ କୁକୁଡା ମା'ଙ୍କ ପାଖରେ ବଳିଦେଇ ତାର ମାଉଁସ ରାନ୍ଧି ତୋର କନିଆକୁ ଖୁଆଇ ତାକୁ ଶୁଆଇଦବୁ । ଏକଦମ୍ ଭଲ ହୋଇଯିବ ।

ସୁରୁପିଲା କଅଣ ବୁଝିଲା କେଜାଣି, ଉଠି ଚାଲିଗଲା ।

ସୁଧୀନ୍ଦ୍ର ବାବୁଙ୍କ ନୂଆ ଚାକରାଣୀ ଆସି ଛିଡ଼ାହେଲା ।

ତମର ନା' କଅଣ ? ସୁଧୀନ୍ଦ୍ର ବାବୁ ପଚାରିଲେ ।

ଝିଙ୍ଗଫୁଲ ଗୋ ।

ଝିଙ୍ଗଫୁଲ୍ ?

ହଇଗୋ ।

ବାଃ, ବେଶ୍ ନା'ଟି ତ । ତୁମର ଘର୍ କେନ୍ ଗାଁ ?

କୁଡ଼ୁମ୍ବ ।

କୁଡ଼ୁମ୍ବ ! କୁଡ଼ୁମ୍ବ!! ବାଃ! ଚମତ୍କାର ! ଜୟ ଶ୍ରୀହରି ଯଶୋଦା ନନ୍ଦନ ! ନାସ୍ତିକ ସୁଧୀନ୍ଦ୍ର ବାବୁ ଆନନ୍ଦର ଆତିଶଯ୍ୟରେ ନାସ୍ତିକତା ଭୁଲିଗଲେ ସହସ୍ର ଯୁଗର ସଂସ୍କାରରେ । ତା ପରେ ଝିଙ୍ଗଫୁଲ ସହିତ କଅଣ କଥାବାର୍ତ୍ତା କରି ସେ ଚାଲିଗଲେ ।

× × ×

ଏହାର ଦୁଇଦିନ ପରେ···

ଆଜି ସମସ୍ତ ସଶସ୍ତ୍ରସୈନ୍ୟ ସାହାଯ୍ୟରେ ଗ୍ରାମର ଲୋକମାନଙ୍କୁ ଟୀକା ଦିଆଯିବ । ସୈନ୍ୟମାନେ ବଡ଼ସକାଳୁ ପ୍ରସ୍ତୁତ ହେଲେଣି ସମସ୍ତପ୍ରକାର ବିପଜ୍ଜନକ ପରିସ୍ଥିତିର ସମ୍ମୁଖୀନ ହେବାକୁ, ଡେପୁଟିସାହେବ ବେଶ୍ ଦମ୍ଭ ରଖିଥିଲେ ଏବଂ ଗର୍ବ ଅନୁଭବ କରୁଥିଲେ ଯେ ତାଙ୍କ ଆଦେଶାନୁସାରେ ସୈନ୍ୟ ଚାଳିତ ହେବେ । କିନ୍ତୁ ସମୟ ଯେତେ ଆଗେଇ ଆସୁଥାଏ ତାଙ୍କର ସାହସ ସେତେ କମି କମି ଆସୁଥାଏ । ଶେଷକୁ ସେ କ୍ଲାନ୍ତମତ ହତାଶ ହୋଇ ପଡ଼ିଲେ ଓ ସାହସ ସଞ୍ଚୟ କରିବା ପାଇଁ ସୈନ୍ୟ କମାଣ୍ଡରଙ୍କ ସହିତ କଥାବାର୍ତ୍ତା କରିବାକୁ ଲାଗିଲେ ଏବଂ ତାଙ୍କୁ ଅଯଥା ଗୁଡ଼ାଏ ଉପଦେଶ ଦେବାକୁ ଲାଗିଲେ କିପରି ଭାବରେ କାର୍ଯ୍ୟ କରିବାକୁ ହେବ । କମାଣ୍ଡର ଡେପୁଟି ସାହେବଙ୍କ ମାନସିକ ଅବସ୍ଥା ବୁଝିପାରି ହସି କହିଲେ ଆପଣ ଟିକିଏ ବି ଘାବରାନ୍ତୁ ନାହିଁ । ବିନା ଉତ୍ତେଜନାରେ ଏବଂ ଅତି ଅଳ୍ପସମୟ ମଧ୍ୟରେ ଆମେସବୁ ସାଫ୍ କରିଦେବୁ । ଏ କଥା ସହିତ ଖଣ୍ଡା ଚଳାଇବା ଭଙ୍ଗୀରେ ସେ ତାଙ୍କର ଡାହାଣ ହାତଟି ନିଜ ବେକ ସମାନରେ ବାଁଆଡୁ ଡାହାଣ ଆଡ଼କୁ କ୍ଷିପ୍ର ଚାଳନା କଲେ । ଡେପୁଟିସାହେବ ବଡ ବଡ଼ ଆଖି କରି ତାଙ୍କଆଡେ ଚାହିଁରହି ଦୀର୍ଘ ନିଶ୍ୱାସ ପକାଇ କହିଲେ, ଠିକ୍ହାୟ ।

ଗାଁ ଭିତରେ ଦଳ ଦଳ ଲୋକେ ଧାଡ଼ି ଧାଡ଼ି ହୋଇ ଛିଡ଼ା ହୋଇଛନ୍ତି ଅବାକ୍ଭାବରେ । ଆଖିରେ ସେମାନଙ୍କର ଭୟ ଓ ହତାଶା, ହୁଏତ ସେମାନେ ଭାବୁଛନ୍ତି, ଇଏ ପୁଣି କଅଣ ହେଲା ! ସ୍ୱାଧୀନ ମତବ୍ୟକ୍ତ କରିବାକୁ ତ ଗଲା ଭୋଟବେଳେ ସମସ୍ତେ ବୁଝାଇଲେ ! ଇଏ ପୁଣି କଅଣ ???

ସୁଧୀନ୍ଦ୍ର ବାବୁ ଭାବୁଛନ୍ତି, ବଡ଼ ବଡ଼ କଥା ଓ କାମ ଭିତରେ ଏତେ ତଫାତ୍ ଯେ ବଡ଼ ବଡ଼ କଥା ଶୁଣିଲେ ଲୋକମାନଙ୍କ ମନରେ ଆତଙ୍କ ଜାତ ହେଉଛି, ହେଇରେ ଆମକୁ ଭୁଲାଇ ନିଜ କାମ ହାସଲ କରିବାକୁ ଆସିଛି ଇଏ ! ଲୋକେ ମହାଦ୍ରିଧାରେ ପଡ଼ି ଆତ୍ମବିଶ୍ୱାସ ହରାଇ ବସିଲେଣି । ଏପରି ଅବସ୍ଥାରେ କି ଯୋଜନା ସଫଳ ହେବ ! କେବଳ ପ୍ରବଞ୍ଚନାହିଁ ବୃଦ୍ଧି ପାଇବ ! ଶିଳ୍ପ ସଭ୍ୟତାରୁ ଜାତ ଗଣତନ୍ତ୍ର ଓ କୃଷିସଭ୍ୟତାରୁ ଜାତ ରାଜତନ୍ତ୍ର କେଉଁଟି ଭଲ କିଏ ଜାଣେ ! କିନ୍ତୁ ଦୁଇଟିର ଗୋଳଆମିଶା ନିଶ୍ଚୟ ବିହ୍ୱଳତା ସୃଷ୍ଟି କରିବ । ଆମେମାନେ ବୋଧହୁଏ ରାଜତନ୍ତ୍ର ଶାସନ ପନ୍ଥାରୁ ସମ୍ପୂର୍ଣ୍ଣ ମୁକ୍ତ ହୋଇ ପାରିନୁ···

ପିଇଁ ପିଇଁ ପିଇଁ ପିକ୍ । ତୀର ସ୍ୱରରେ ହଠାତ୍ ହୁଇସିଲ ବାଜି ଉଠିଲା । ସୈନ୍ୟମାନେ ଯେ ଯାହା ସ୍ଥାନରେ ଛିଡ଼ା ହୋଇଗଲେ ।

ଫର୍‌ୱାର୍ଡ ମାର୍ଚ୍ଚ, ଲେଫ୍‌ଟ୍ ରାଇଟ୍, ଲେଫ୍‌ଟ୍ ରାଇଟ୍, ଲେଫ୍‌ଟ୍···

ଆଗରେ ଡେପୁଟିସାହେବ, ପୁଲିସ୍ ସାହେବ ଓ ସୁଧୀନ୍ଦ୍ର ବାବୁ ଚାଲିଲେ ଟୀକା ଦେବାକୁ ।

ଲେଫ୍‌ଟ୍ ରାଇଟ୍, ଲେଫ୍‌ଟ୍···ଲେଫ୍‌ଟ୍···ଲେଫ୍‌ଟ୍··· ହାଅଲ୍‌ଟ୍···

ସମସ୍ତେ ଥମକି ଛିଡ଼ାହେଲେ ଗ୍ରାମର ଉପାନ୍ତ ପ୍ରାନ୍ତରରେ ଡ଼ମ୍, ଡ଼ମ୍, ଡମ୍, ଡମା ଡ଼ମ୍, ମାଦଳ ବାଜୁଛି ।

ଲୋକମାନେ ଝିଙ୍ଗଫୁଲକୁ ଘେରି ଛିଡ଼ା ହୋଇଚନ୍ତି; ଝିଙ୍ଗଫୁଲ ମୁଣ୍ଡର ବାଳ ମୁକୁଳା କରି ଗ୍ରାମର ସୀମାରେ ବଡ଼ ଝଙ୍କାଳିଆ ବରଗଛ ତଳେ ବସି ଖାଲି ଝୁଲୁଛି ଆଉ ଫଁ ଫଁ ନିଶ୍ୱାସ ମାରୁଛି, ଆଜି କୁଡ଼ୁମ୍ବ ଗ୍ରାମରେ ହଇଜା ଲାଗିବାର କାରଣ ଭାଲସୀ ଫିଟାଇ

କରିବେ ଏବଂ ତାର ପ୍ରତିକାରର ଉପାୟ ମଧ୍ୟ କରିବେ । ସମସ୍ତ ଗ୍ରାମବାସୀ ଆତଙ୍କିତ ଔତ୍ସୁକ୍ୟରେ ଅପେକ୍ଷା କରି ରହିଛନ୍ତି ।

ଖାଇବି, ଖାଇବି, ସବୁ ଗାଁକୁ ଗୃଷ୍ଟି ଦେବି, କାଳସୀ ହାକିଲେ ।

ଗାଁର ଲୋକମାନେ କରପତ୍ର ଯୋଡ଼ି ଆତଙ୍କିତ ଭାବରେ ତାକୁ ଘେରି ଛିଡ଼ା ହୋଇଛନ୍ତି । କାହାରି ମୁହଁରୁ କଥା ବାହାରୁ ନାହିଁ । ବୁଢ଼ା ପ୍ରଧାନ ସାହସ କରି ପଚାରିଲେ, ମା ତମେ କିଏ ?

ମୁଁ କିଏ ? ହଇରେ, ପଚାରୁଚୁ ମୁଁ କିଏ ? ମୋତେ ଚିହ୍ନି ପାରୁନୁ ! ତୁ ପରା ମୋତେ ବଳି ଯାଚିଥିଲୁ, ଦେଲୁଣି ? ତୋର ଗୋଟିଏ ପୁଅ ଖାଇଚି, ଆଜି ସଭିଙ୍କି ଖାଇବି । ମୁଁ ମଶାଣିଚଣ୍ଡୀ । ହୁଁ ହୁଁ ହୁଁ ହୁଁ । ଦେ ଖାଇବାକୁ ଦେ । କାଳସୀ ଝୁଲିବାକୁ ଲାଗିଲେ, ଥରିବାକୁ ଲାଗିଲେ ।

ବୁଢ଼ା ପ୍ରଧାନ ବରଡ଼ାପତ୍ର ଭଳି ଥରିବାକୁ ଲାଗିଲେ ।

କଳିଆ କନ୍ଧ ହାତ ଯୋଡ଼ି ପଚାରିଲେ, ମା, ଗାଁରୁ ଅଧେ ଖାଇସାରିଲଣି, ତେବେ ବି ଭୋକ ଯାଇନ ! ଆହୁରି ଖାଇବ !!

ହୁଁ ହୁଁ କାଳସୀ ଗର୍ଜି ଉଠିଲେ ।

ମାଦଳ ଆହୁରି ଜୋରରେ ବାଜିଲା ।

କାଳସୀ ଆହୁରି ଥରିଲେ, ଥରି ଥରି କହିବାକୁ ଲାଗିଲେ, ମୁଁ କେବେଠୁ ଘର ଛାଡ଼ି ଆସିଲଣି । ବୁଢ଼ା କଅଣ କରୁଥିବ କେଜାଣି ! ଗଣେଶ କାର୍ତ୍ତିକ କଅଣ କରୁଥିବେ କେଜାଣି !! ମୋତେ ଭାରି ଭୋକ । ମୋ ପେଟ ନ ପୂରିଲେ ମୁଁ ଯିବି ନାହିଁ । ହୁଁ ହୁଁ ହୁଁ ହୁଁ... କାଳସୀର ସ୍ୱଗତୋକ୍ତିରେ ସମସ୍ତେ ଆତଙ୍କିତ ହୋଇ ଛିଡ଼ା ହୋଇ ରହିଲେ ।

କାଳସୀ ଦେଖିବାକୁ ଆସିଲେ ପୁଲିସ ସାହେବ ଓ ଡେପୁଟି ସାହେବ ।

ଡେପୁଟି ସାହେବ ପୁଲିସ ସାହେବଙ୍କୁ କାଳସୀର ବୈଜ୍ଞାନିକତତ୍ତ୍ୱ ବୁଝାଇବାକୁ ଲାଗିଲେ, ଦେୟାର୍ ଆର୍ ମୋର ଥିଙ୍ଗ୍ସ ଅନ୍ ଆର୍ଥ ଦ୍ୟାନ ଇଓ୍ୱାର୍ ଫିଲସଫି ଡ୍ରିମ୍ସ୍ ଅଫ୍ । ଅନେକ ଆଶ୍ଚର୍ଯ୍ୟ କଥା ଅଛି ଆମର ହିନ୍ଦୁଧର୍ମରେ । ଆଜକାଲ ବୈଜ୍ଞାନିକମାନେ ଯାହାସବୁ ଆବିଷ୍କାର କରୁଛନ୍ତି ବା କରିବେ ଦଶହଜାର ବର୍ଷ ତଳେ ଆମର ପୂର୍ବ-ପୁରୁଷମାନେ ଧ୍ୟାନ ବଳରେ କହି ଯାଇଛନ୍ତି । ଏଇ ଧରନ୍ତୁ ପରମାଣୁ କଥା । ଆଜକାଲି ଆବିଷ୍କାରକଲେ ଯେ ପ୍ରତ୍ୟେକ ପରମାଣୁରେ ଗୋଟିଏ ପ୍ରୋଟୋନ୍ ଗୃହ ପାଖରେ କେତେଗୁଡ଼ିଏ ଇଲେକ୍ଟ୍ରନ୍ ପରିକ୍ରମା କରୁଛନ୍ତି । କିନ୍ତୁ ଦଶହଜାର ବର୍ଷ ତଳେ ଆମର ମୁନିଋଷିମାନେ ଏକଥା ଜାଣି ପାରିଥିଲେ । ଶିବଲିଙ୍ଗ ତାହାର ପ୍ରମାଣ । ଲିଙ୍ଗ ହେଉଛି ପ୍ରୋଟୋନ୍ ଓ ତାର ଗୃହପାଖରେ ଶକ୍ତି ହେଉଚି ଇଲେକ୍ଟ୍ରନ୍ । କାଳସୀ ବିଷୟରେ ବୈଜ୍ଞାନିକ ଗବେଷଣା ହେବା ଉଚିତ । ମୁଁ ଏହା ଆରମ୍ଭ କରିଚି । ଏସବୁ ବିଷୟ ହସି ଉଡ଼ାଇଦେବା କଥା ନୁହଁ । ୟୁରୋପର ଲୋକେ ଏସବୁ ଦେଖି ଆଶ୍ଚର୍ଯ୍ୟ ହେଉଚନ୍ତି ସେମାନେ ଆମ ଶାସ୍ତ୍ର ପଢ଼ିବୁଝି କେତେ କଥା ଆବିଷ୍କାର କରୁଛନ୍ତି ।

ଏହି ସମୟରେ ଦୂରରୁ ଶୁଣାଗଲା ବମ୍ ବମ୍ ବବମ୍ ବବମ୍ ବମ୍ । ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଦେଖିଲେ ଜଣେ ଗୌରକାନ୍ତି, ଜଟାଜୁଟ ଧାରୀ ଆସୁଛନ୍ତି । ହାତରେ ତାଙ୍କର ତ୍ରିଶୂଳ, କଣ୍ଠରେ ବଙ୍କିମ ଚନ୍ଦ୍ରମା । ବେଶଭୂଷା ଦେଖି କାହାର ସନ୍ଦେହ ରହିଲା ନାହିଁ ଯେ ସ୍ୱୟଂ ଶିବଶଙ୍କର କୈଳାସପତିଙ୍କର ଆବିର୍ଭାବ ହୋଇଚି ଧରା-ଧାମରେ । ଭୀତତ୍ରସ୍ତ ଜନତା ଲମ୍ବେ ଲମ୍ବେ ଶୋଇଗଲେ । ଡେପୁଟି ସାହେବ ଓ ପୁଲିସ ସାହେବ ମଧ୍ୟ ମୁଣ୍ଡ ନୁଆଇ ନମସ୍କାର କଲେ । ସୈନ୍ୟମାନେ ଜୋତାରେ ଜୋତା ବାଡ଼େଇ ଠକ୍ କରି ସାଲ୍ୟୁଟ୍ କଲେ ।

ସଦାଶିବ ସମସ୍ତଙ୍କୁ ହାତ ବଢ଼ାଇ ଆଶୀର୍ବାଦ କରି ଗଲେ କାଳସୀ ପାଖକୁ ଓ କାଳସୀର ହାତଧରି ଉଠାଇବାକୁ ଚେଷ୍ଟା କଲେ ।

କାଳସୀ କହିଲା, ନା ମୁଁ ଯିବି ନାହିଁ ତୁମ ଘରକୁ ଏଇକ୍ଷଣି । ପେଟ ନ ପୂରିଲେ ଯିବି ନାହିଁ—।

ସଦାଶିବ କହିଲେ, ତୁ ତ ଏଠି, ହାମେ ତ ଏଠି, କୈଳାସ କେମିତି ଚାଲିବ । ଜଟ୍ ଜ୍ବଲ୍, ଛୁ, ଅଫ୍‌ଟ ହୁଅନ, ହାମେ ବାସୁଆ ବଳଦ ଚରାଇ ଯିବା ସମୟରେ ତମେ ଚାଲି ଆସିଲ !!

ଚଣ୍ଡୀ କହୁଁଛଣ ପଣ୍ଡିତଦେବଙ୍କୁ ଚାହିଁ ରହି ଟିକଏ ମୂରୁକ ହସି କହିଲେ ଯିବ ତେବେ ଆଗେ ମୋତେ ଫୋଡ଼ । ଏ ଗ୍ରାମରେ ରହି ମୋତେ ରୋଗ ଧରିଚି । କୈଳାସ ଘରକୁ ଗଲେ ସେଠି ପିଲାଙ୍କୁ ରୋଗ ଧରିବ ।

ଶିବ କହିଲେ, ଏଇ କଥା, ତାପରେ ସେ ତିନଥର ତାଳି ମାରିଲେ ।

ନନ୍ଦୀ ଭୃଙ୍ଗି ହଠାତ୍ ଗୋଟାଏ ଘର ପଛଆଡୁ ବାହାରି ଆସିଲେ ବାସୁଆ ବଳଦକୁ ଧରି ଏବଂ ସାଙ୍ଗେ ସାଙ୍ଗେ ମା' ଚଣ୍ଡୀଙ୍କୁ ଦେଲେ ଗୋଟିଏ ଇଞ୍ଜେକ୍‌ସନ୍ । ତାପରେ ଚଣ୍ଡୀ ଆଦେଶ ଦେଲେ ସମସ୍ତଙ୍କୁ ଇଞ୍ଜେକ୍‌ସନ୍ ନେବାକୁ । କିଏ ଆଗେ ଇଞ୍ଜେକ୍‌ସନ୍ ନେବ ସେଥିପାଇଁ ଗୋଟିଏ ପ୍ରତିଯୋଗିତା ଆରମ୍ଭ ହୋଇଗଲା ।

ସମସ୍ତେ ଇଞ୍ଜେକ୍‌ସନ୍ ନେବାପରେ ଶିବ ପାର୍ବତୀ ସେଇ ରାତିରେ ଚାଲିଗଲେ···କୈଳାସ !

ସେତେବେଳକୁ ବିଧାନସଭାରେ ଚାଲିଥାଏ ଅବିଶ୍ବାସ ପ୍ରସ୍ତାବ ଉପରେ ଟେବୁଲ ବାଡ଼ିଆ, ନାନା ରକମର ଅଦ୍ଭୁତ ଶବ୍ଦରେ ଚିତ୍କାର ଏବଂ ଗୁଇ ଖୋଳାଖୋଳି । ଦୁଇଜଣ ସଭ୍ୟ ସେତେବେଳକୁ

ସାଙ୍ଘାତିକ ଭାବରେ ଆହତ ହୋଇ ସାରିଲେଣି । କିନ୍ତୁ ଦଳର ଶ୍ରେଷ୍ଠ କମିଯିବା ଭୟରେ ସେମାନଙ୍କୁ ଡାକ୍ତରଖାନା ପଠାଇବା ଅସମ୍ଭବ ହୋଇ ପଡ଼ିଛି ।

ସୁଧୀନ୍ଦ୍ର ବାବୁ ଭାବୁଛନ୍ତି ଏପରି ଉପାୟରେ କାର୍ଯ୍ୟୋଦ୍ଧାର କରିବାର କୌଣସି ସାର୍ଥକତା ଅଛି କି ନା ! ଗୁଳି କରିଦେବା ଭୟ ଦେଖାଇ କାର୍ଯ୍ୟୋଦ୍ଧାର କରିବା ଓ ଏପରି ଉପାୟରେ କାର୍ଯ୍ୟୋଦ୍ଧାର କରିବା ଭିତରେ ମୌଳିକ ପାର୍ଥକ୍ୟ ଅଛି କି ନା !!……

…ଭାବୁଛନ୍ତି, ମନୁଷ୍ୟର ଅହମିକା ଯେତେବେଳେ ଦେଶ ବା ଜାତି ବା ଧର୍ମ ବା ମତବାଦ ମାଧ୍ୟମରେ ପ୍ରକାଶ ପାଉଛି ସେତେ-ବେଳେ ବିଭିନ୍ନ ଦେଶ, ଜାତି, ଧର୍ମ ବା ମତବାଦ ମଧ୍ୟରେ ଲାଗୁଛି ଯୁଦ୍ଧ ବା ବିବାଦ । ଅତଏବ ଯୁଦ୍ଧରେ ଜୟଲାଭ ଦ୍ୱାରା କୌଣସି ମୌଳିକ ସମସ୍ୟା ସମାଧାନ ଅସମ୍ଭବ । ଅଥଚ ଅହମିକାର ବିଲୋପ ମଧ୍ୟ ଅସମ୍ଭବ । ତେବେ କାହା ମାଧ୍ୟମରେ ପ୍ରକାଶ ପାଇଲେ ଏ ଅହମିକା ଆନନ୍ଦମୟ ଓ ଶାନ୍ତିମୟ ହେବ ? ସମସ୍ତେ ଯଦି ଅକପଟ ଭାବରେ କହି ପାରନ୍ତେ ସର୍ବେ ସୁଖିନଃ ଭବନ୍ତୁ…। କିନ୍ତୁ ଅନ୍ୟର ଦୁଃଖରେ ଦୁଃଖିତ ହେବା ଖୁବ୍ ସହଜ । ଅନ୍ୟର ସୁଖରେ ସୁଖୀହେବା ଅତି କଷ୍ଟକର । ବୋଧହୁଏ, ଆଦର୍ଶ ଯେତେ ବଡ଼ ହେଉନା କାହିଁକି ତାହା ଯଦି ନିଜପ୍ରତି ବା ନିଜର ଜାତି, ଦେଶ, ଧର୍ମ ବା ମତ ପ୍ରତି ମୋହ ସୃଷ୍ଟି କରେ ଓ ତଦ୍ଦ୍ୱାରା ନିଜକୁ ବିଶ୍ଳେଷଣ କରି, ତନ୍ନ ତନ୍ନ କରି ଦେଖିବାର ଶକ୍ତି, ସାହସ ଓ ବିନୟ ନଷ୍ଟ କରିଦିଏ ତେବେ କେବଳ ଅହମିକା ଓ ଗର୍ବହିଁ ବଢ଼ାଏ । ଯୁଦ୍ଧ ତେଣୁ ଅବଶ୍ୟମ୍ଭାବୀ ।……

ଝରଫୁଲ ନୁଖୁର ବାଳରେ ପାନଆ ଚଳାଉ ଚଳାଉ ଆସି ଛୁଉ଼ା ହେଲା ।

ସୁଧୀନ୍ଦ୍ର ବାବୁ ତାକୁ ସପ୍ରଶଂସ ଦୃଷ୍ଟିରେ ଚାହିଁ କହିଲେ, ଝରଫୁଲ ଗୋ, ଆମେ ସମସ୍ତେ ଝରଫୁଲ...



# ଉଦ୍‌ଭ୍ରାନ୍ତ

କପିଳବସ୍ତୁରେ ରାଜା ଶୁଦ୍ଧୋଦନଙ୍କର ସୁରମ୍ୟ ପ୍ରମୋଦୋଦ୍ୟାନ । ସମସ୍ତ ସୂର୍ଯ୍ୟାସ୍ତ । ପ୍ରଥମ ବସନ୍ତର ସମାଗମରେ ଉଦ୍ୟାନର ଶୋଭା ଅପୂର୍ବ । କିଂଶୁକ, କୁରୁବକ, କୁଟଜ, ପୁନ୍ନାଗ, ଅଶୋକ ପ୍ରଭୃତି ପୁଷ୍ପାବଳରେ ତରୁରାଜ ନମିତ । ପିକକୁଳର ଅବିରାମ କୁହୁ କୁହୁ ସହିତ ଭ୍ରମରର ଗୁଞ୍ଜନ ମିଳିତ ହୋଇ ତୋଳିଚି ଏକ ଅପୂର୍ବ ଝଙ୍କାର । ପ୍ରାସାଦର ଲାସ୍ୟମୟୀ ତରୁଣୀମାନେ ପ୍ରମୋଦୋଦ୍ୟାନରେ ପୁଷ୍କରିଣିରେ ଜଳକ୍ରୀଡ଼ାରେ ମାତିଛନ୍ତି । ସେମାନଙ୍କର ତରଙ୍ଗାୟିତ ତନୁ ଓ ଛନ୍ଦାୟିତ ହାସ୍ୟ ମନଟରେ ମତାଣିଆ ମଦିରା ପରିବେଷଣ କରୁଚି । ଗନ୍ଧବହ ମନ୍ଦେ ମନ୍ଦେ ନାନା ସୁବାସ ବିତରଣ କରୁଚି ।

ଅଦୂରେ ଗୋଟିଏ ପ୍ରସ୍ତର ବେଦିକା ଉପରେ ଗୌତମ ମୌନଭାବରେ ବସିଛନ୍ତି । ଯୁବତୀମାନଙ୍କର ମୂହୁର୍ମୁହୁ କଟାକ୍ଷପାତ ପ୍ରତି ତାଙ୍କର ଭ୍ରୂକ୍ଷେପ ନାହିଁ । ଉଦାସ ଆଖି ଯୋଡ଼ିକ ତାଙ୍କର ଅସୀମରେ ନ୍ୟସ୍ତ । ଚିନ୍ତାରେ ତାଙ୍କର କପାଳର ରେଖା ମଝିରେ ମଝିରେ ପରିସ୍ଫୁଟ ହୋଇ ଉଠିଚି । ତପ୍ତଦୀର୍ଘ ନିଶ୍ୱାସ ବାହାରି ଅସୀମରେ ମିଳାଇ ଯାଉଚି ।

ସେ ଭାବୁଛନ୍ତି......ଏ ବସନ୍ତ ଚିରସ୍ଥାୟୀ ନୁହେଁ, ଏ ଜୀବନ ମଧ୍ୟ ଚିରସ୍ଥାୟୀ ନୁହେଁ । ଏ ଦୁଇଟି ଅସ୍ଥାୟୀ ପରିବେଶରୁ ଏ ଉନ୍ମାଦନା ଅସ୍ଥାୟୀ ହେବ, ଏଥିରେ ସନ୍ଦେହ ନାହିଁ । ଅସ୍ଥାୟୀ ବସ୍ତୁ ବା ଭାବ ଦୁଃଖ ଦାୟକ । ଏ ଜୀବନର ଆଦ୍ୟରେ ଦୁଃଖ, ମଧ୍ୟରେ ଦୁଃଖ ଏବଂ ଅନ୍ତିମରେ ମଧ୍ୟ ଦୁଃଖ । ଏ ଜୀବନର ପ୍ରତ୍ୟେକ ମୁହୂର୍ତ୍ତ ଦୁଃଖଦାୟକ...

ଦୀର୍ଘନିଶ୍ୱାସ ପକାଇ ଗୌତମ ଅଶ୍ରୁପୂର୍ଣ୍ଣ ନୟନରେ ଗୃହଆଡେ ଶୂନ୍ୟ ଦୃଷ୍ଟିରେ ଚାହିଁଲେ । ବିଗତ କେତେଦିନର ପ୍ରତ୍ୟେକଟି ଘଟଣା ବିଷୟରେ ସେ ପୁଣି ଭାବିବାକୁ ଲାଗିଲେ ।

...ସେହି କମ୍ପିତ କଳେବର, ଗଳିତ ଚର୍ମ, ଦନ୍ତହୀନ ଜରାଗ୍ରସ୍ତ ବୃଦ୍ଧ ସେଇ ପୂତିଗନ୍ଧମୟ, ମାର୍ଗପାର୍ଶ୍ୱରେ ପତିତ ବ୍ୟକ୍ତି ଏବଂ ତଥାପି ନିର୍ଲଜ୍ଜ ଭାବରେ ଜୀବିତ ଜୀବନ, ସେଇ ଶବ ଏବଂ ଶବ ବାହକମାନଙ୍କ ପଛରେ ଗେରୁଦ୍ୟମ ନା ନାରୀ; ଗୋଟି ଗୋଟି କରି ସବୁ ଦୃଶ୍ୟ ତାଙ୍କ ଆଖି ଆଗରେ ଭାସିଗଲା । ଦୁଇବିନ୍ଦୁ ଅଶ୍ରୁ ତାଙ୍କର ବକ୍ଷସ୍ଥିତ ରତ୍ନ ଖଚିତ ମୁକ୍ତାହାର ଉପରେ ପଡି ଗଡ଼ିଗଲା ।

...ତଥାପି, ତଥାପି ମନୁଷ୍ୟ ନିର୍ଲଜ୍ଜ ଓ ନିର୍ମମ ଭାବରେ ମରୀଚିକା ପଛରେ ଧାବମାନ !

ଗୌତମ ଗାତ୍ରୋତ୍‌ଥାନ କରି ଧୀରେ ଧୀରେ ପ୍ରାସାଦ ଆଡକୁ ଅଗ୍ରସର ହେଲେ ଏବଂ ଦ୍ୱାରପାଳକୁ ଆଦେଶ ଦେଲେ ଛନ୍ଦକକୁ ରଥଯୋଜନା କରିବାକୁ ଆଜ୍ଞା ଦେବାପାଇଁ ।

ନିଜ କକ୍ଷ ମଧ୍ୟରେ ପ୍ରବେଶ କରିବାକୁ ଯାଇ ଦେଖିଲେ ଯୁବତୀ ଗୋପା ଦ୍ୱାରଦେଶରେ ଦଣ୍ଡାୟମାନା । ଶିଶିର ସ୍ନାତ କମଳକୋରକ ପରି ଆଖି ଯୋଡିକ ତାଙ୍କର ଛଳଛଳ ।

ଗୌତମ ତାଙ୍କୁ ଉପେକ୍ଷା କରି କକ୍ଷମଧ୍ୟରେ ପ୍ରବେଶ କରିବାକୁ ଯାଆନ୍ତେ ଗୋପା ତାଙ୍କ ହାତ ଧରି ଅଟକାଇଲେ । ଗୌତମ ବାଧା ନ ଦେଇ ନିର୍ବାକ ଭାବରେ ସେଇଠି ଛିଡ଼ାହୋଇ ରହିଲେ । ଦୃଷ୍ଟି ତାଙ୍କର ପୂର୍ବପରି ବେଦନାମୟ ।

ଗୋପା ଅଭିମାନ ଭରା କଣ୍ଠରେ କହିଲେ, ପ୍ରମୋଦୋଦ୍ୟାନକୁ ଏକାକୀ—। ତୁଚ୍ଛ ଅଭିମାନ ତାଙ୍କର ବାକ୍‌ରୋଧ କଲା ।

ଗୌତମଙ୍କ କପାଳର ରେଖା ପରିସ୍ଫୁଟ ହୋଇ ଉଠିଲା । ଗୋପାଙ୍କ ଆଡ଼କୁ ଚାହିଁ ସେ ଭାବିବାକୁ ଲାଗିଲେ, ଏ ତରଙ୍ଗାୟିତ ନର୍ମୋକ ତଳେ ବୀଭତ୍ସ ଦୃଶ୍ୟ ଲୁକ୍‌କାୟିତ ଅଛି, ଏ ତୃଷ୍ଣା ସେଇ ବୀଭତ୍ସତାରୁ ଜାତ ।

ପରେ ମାତ୍ର ଗୋପାଙ୍କ ଆଡ଼କୁ ଚାହିଁ ଗୌତମ କ୍ଷିପ୍ର ଗତିରେ ପ୍ରାସାଦରୁ ବାହାରି ଗଲେ । ଉଦ୍‌ଗତ ଅଶ୍ରୁରୋଧ କରିବାର ଚେଷ୍ଟାରେ ଗୋପାଙ୍କର ବିମ୍ବୋଷ୍ଠାଗ୍ର କମ୍ପିତ ହେଲା । ଅଭିମାନର ଆତିଶଯ୍ୟରେ ସେ ଗୌତମଙ୍କର ପ୍ରତ୍ୟାବର୍ତ୍ତିତ ପଦଚିହ୍ନ ଉପରେ ଲୋଟି ପଡ଼ିଲେ ।

ଗୌତମଙ୍କର ରଥ ସେତେବେଳେ ପ୍ରାସାଦ ଛାଡ଼ି ରାଜ ମାର୍ଗରେ ଧୀରେ ଧୀରେ ଅଗ୍ରସର ହେଉଛି ।

ଗୌତମ ଦେଖିଲେ ଅଦୂରେ ଏକ ଅପୂର୍ବ ପୁରୁଷ । ହସ୍ତରେ ତାଙ୍କର କମଣ୍ଡଳୁ । କୌପୀନ ବ୍ୟତିରେକ ଆଉ କୌଣସି ବସ୍ତ୍ର ଅଙ୍ଗରେ ନାହିଁ ।

ଗୌତମ ରଥ ଅଟକାଇ ସନ୍ନ୍ୟାସୀଙ୍କ ନିକଟକୁ ଗଲେ । ସନ୍ନ୍ୟାସୀ ଉଦ୍‌ଭ୍ରାନ୍ତ ଦୃଷ୍ଟିରେ ଗୌତମଙ୍କ ଆଡ଼କୁ ଚାହିଁ ରହିଲେ । ଗୌତମ କିଛିକ୍ଷଣ ଅଭିଭୂତ ଭାବରେ ସନ୍ନ୍ୟାସୀଙ୍କ ଆଡ଼େ ଚାହିଁ ପଚାରିଲେ, ଆପଣଙ୍କର ପରିଚୟ ?

—ସେହି ପ୍ରଶ୍ନର ଉପଯୁକ୍ତ ଉତ୍ତର ପାଇବା ପାଇଁ ତ ମୁଁ ଗୃହତ୍ୟାଗ କରିଛି—ସନ୍ନ୍ୟାସୀ ସହାସ ଉତ୍ତର ଦେଲେ ।

—ଆପଣ କଅଣ ଚିନ୍ତା କରୁଛନ୍ତି ?

—ବନ୍ଧୁ, କେଉଁ ବିଷୟରେ ଚିନ୍ତା କରିବି ଏ ପର୍ଯ୍ୟନ୍ତ ମୁଁ ନିରୂପଣ କରିପାରି ନାହିଁ ।

—ଆପଣଙ୍କର ଗନ୍ତବ୍ୟ ?

—କିଏ ଜାଣେ ?

ସନ୍ନ୍ୟାସୀ ସହାସ ଅଭିବାଦନ କରି ବିଦାୟ ନେଲେ ।

ଏ କି ଅପୂର୍ବ ଜୀବ ! ଏହାଙ୍କର ବାସସ୍ଥାନ ନାହିଁ, ପରିଚୟ ନାହିଁ, ଧନ ନାହିଁ, ତଥାପି କି ଐଶ୍ୱର୍ଯ୍ୟବାନ ମନେ ହେଉଛନ୍ତି ଏ ! ଗୌତମ ଆଶ୍ଚର୍ଯ୍ୟ ଭାବରେ କିଛିକ୍ଷଣ ସନ୍ନ୍ୟାସୀ ଆଡ଼େ ଚାହିଁ ଛନ୍ଦକଙ୍କୁ ପଚାରିଲେ—ଛନ୍ଦକ, ତୁମେ ଏହାଙ୍କୁ ଜାଣ ?

ଛନ୍ଦକ ସ୍ମିତ ହାସ୍ୟକରି ଉତ୍ତର ଦେଲେ—ଯୁବରାଜ ଏମାନଙ୍କର ପରିଚୟ ଦେଶ, କାଳ, ପାତ୍ର ମଧ୍ୟରେ ନିବଦ୍ଧ ନଥାଏ; ଏମାନଙ୍କର ପରିଚୟ ଏମାନଙ୍କର ଚିନ୍ତାଧାରା ଯାହା ଚିରନ୍ତନ ।

ରଥ ଫେରାଅ ଛନ୍ଦକ—ଗୌତମ ଦୀର୍ଘ ନିଶ୍ୱାସ ପକାଇ ଆଦେଶ ଦେଲେ ।

ସେଇଦିନ ମଧ୍ୟ ରାତ୍ରରେ ସୁପ୍ତା ଗୋପାଙ୍କର ଶିଥିଳ ଆଲିଙ୍ଗନ ମୁକ୍ତ କରି ପୁତ୍ର ରାହୁଲଙ୍କ ଆଡ଼େ ଥରେ ମାତ୍ର ଚାହିଁ ଗୌତମ ରାଜ-ପ୍ରାସାଦ ପରିତ୍ୟାଗ କଲେ । ପରଦିନ ପ୍ରଭାତ ନ ହେଉଣୁ ଛନ୍ଦକ ଗୌତମଙ୍କର ରତ୍ନହାର, ବହୁମୂଲ୍ୟ ପରିଚ୍ଛଦ ଏବଂ କର୍ତ୍ତିତ କୁଞ୍ଚିତ କେଶଦାମ ମହାରାଜ ଶୁଦ୍ଧୋଦନଙ୍କ ପାଦତଳେ ରଖି ନୀରବରେ ଅଶ୍ରୁବିସର୍ଜନ କରିବାକୁ ଲାଗିଲେ । ଶୁଦ୍ଧୋଦନ ମସ୍ତକରେ ହସ୍ତରଖି

ସେଣ୍ଠାରେ ବସି ପଡ଼ିଲେ । ଅନ୍ତଃପୁରରେ ଗୋପା ଏ ସମ୍ବାଦ ପାଇ ମୂର୍ଚ୍ଛିତା ହେଲେ ।

× × ×

ରାଜଗୃହର ଉପାନ୍ତରେ ଗୋଟିଏ ଆଶ୍ରମ ।

ଯୁବକ ଗୌତମ ନାନା ଦେଶ ପର୍ଯ୍ୟଟନ କରି ଦିନେ ତପ୍ତ ମଧ୍ୟାହ୍ନରେ ଆଶ୍ରମର ଦ୍ୱାର ଦେଶରେ ଉପସ୍ଥିତ ହେଲେ । ଆଶ୍ରମ ମଧ୍ୟରୁ ଅଳାର କାଲାମ ଏବଂ ଉଦ୍ରକ ରାମପୁତ୍ର ଆଶ୍ରମ ଭିତରକୁ ଯିବାପାଇଁ ଗୌତମଙ୍କୁ ସଙ୍କେତ ଦେଲେ ।

କଣ ଚାହଁ ଯୁବକ ? କାଲାମ ପଚାରିଲେ ।

ମୁଁ ଚାହେଁ ପରମ ସୁଖ । ଗୌତମଙ୍କର ଉତ୍ତର ବେଦନାମୟ ।

ରାମ ପୁତ୍ର କହିଲେ, ପରମ ସୁଖ ଜୀବନର ଲକ୍ଷ୍ୟ ହେବା ଉଚିତ ବତ୍ସ । କେବଳ କଠୋର ସାଧନା ଦ୍ୱାରା ତାହା ପ୍ରାପ୍ତ ହୁଏ । ଯେତେବେଳେ ମନ ନିସ୍ତରଙ୍ଗ ପୁଷ୍କରିଣୀ ପରି ସ୍ତବ୍ଧ ସ୍ଥିର, କୌଣସି ଇଚ୍ଛାର ଉଦ୍ରେକ ନାହିଁ, ବତ୍ସ, ସେତେବେଳେ ଜାଣିବ ତୁମ୍ଭର ସାଧନା ସାର୍ଥକ ହୋଇଛି । ସେ ଅବସ୍ଥାରେ ମନୁଷ୍ୟ ଅପାର ଆନନ୍ଦ ପାଏ । କଠୋର ସାଧନାରେ ତୁମ୍ଭେ ଅରୂପ ବ୍ରହ୍ମ-ଲୋକ ପାଇବ ।

କାଲାମ କହିଲେ, କଠୋର ସାଧନାବଳରେ ତୁମ୍ଭେ ଅକିଞ୍ଚ-ନାୟତନ ସ୍ତରରେ ଜନ୍ମଲାଭ କରିବ ଯେଉଁଠାରେ ତୁମ୍ଭର ମନ ନିରୁଦ୍‌ବେଗ, ନିଥର ରହିବ ।

ଗୌତମ ମନଯୋଗ ଦେଇ ଉପଦେଶଗୁଡିକ ଶୁଣୁ ଶୁଣୁ ଅନ୍ୟ ମନସ୍କ ହୋଇଗଲେ । ମନରେ ତାଙ୍କର ପ୍ରଶ୍ନ ଜାତ ହେଲା, ମନର ଏପରି ଅବସ୍ଥା କଅଣ ଚରମଲକ୍ଷ୍ୟ ହେବା ଉଚିତ ? ମନର ଏପରି

ଅବସ୍ଥାରେ ମୁଁ ମୋର ପ୍ରଶ୍ନର ଉତ୍ତର ପାଇପାରିବି କି ? ମାନବ ଜାତିର ଦୁଃଖର ଅବସାନର ଉପାୟ ପାଇବି କି ?

ଗୌତମଙ୍କ ମନ ନାନା ସନ୍ଦେହ ଦୋଳାରେ ଦୋଳାୟିତ ହେବାକୁ ଲାଗିଲା । ରାତ୍ରିର ମଧ୍ୟମ ଯାମରେ କାଲାମ ଏବଂ ରାମପୁତ୍ର ଯେତେବେଳେ ଗଭୀର ଧ୍ୟାନରେ ନିମଜ୍ଜିତ ଗୌତମ ଆଶ୍ରମ ତ୍ୟାଗ କରି ଚାଲିଲେ ତାଙ୍କର ସମସ୍ୟାର ସମାଧାନର ଅନ୍ୱେଷଣରେ ।

ଏ ଅନନ୍ତ ସୃଷ୍ଟିରେ ମନୁଷ୍ୟର ସ୍ଥାନ କେଉଁଠି ? ତାର ବିକାଶ କେଉଁ ଦିଗରେ ହେବା ଉଚିତ ? ଇନ୍ଦ୍ରିୟଜନିତ ସୁଖର ଅଭିବୃଦ୍ଧିର ନୂତନ ନୂତନ ଉପାୟ ଆବିଷ୍କାର କରିବାରେ ତାର ବୁଦ୍ଧିର ବିକାଶ କଅଣ ଶ୍ରେଷ୍ଠ ବିକାଶ ? ମନୁଷ୍ୟ କାହିଁକି ଇନ୍ଦ୍ରିୟ-ଜନିତ ସୁଖ ପ୍ରତି ଅଧିକ ଆକୃଷ୍ଟ ହେଉଛି ?

କିଏ ଦେବ ଏହାର ଉତ୍ତର ! ପାଗଳ ପରି ଗୌତମ ମଗଧର ଏକ ପ୍ରାନ୍ତରୁ ଅପର ପ୍ରାନ୍ତ ପର୍ଯ୍ୟନ୍ତ ବାରମ୍ବାର ଯାତାୟାତ କଲେ ଏହାର ସମାଧାନ ପାଇଁ । କୌଣସିଠାରେ ତାଙ୍କର ମନ ଏକାଧିକ ଦିନ ସ୍ଥିର ରହିଲା ନାହିଁ । ଦୁର୍ବାର ପ୍ରଶ୍ନର ଜ୍ୱାଳାରେ ସେ ଧାବମାନ ! ସେ ଉଦ୍‌ଭ୍ରାନ୍ତ । ପୁଞ୍ଜୀଭୂତ ପ୍ରଶ୍ନର ଚାପରେ ମସ୍ତିଷ୍କର ସ୍ନାୟୁ ସର୍ବଦା ଉତ୍ତେଜିତ ।

କେତେଦିନ ହେଲା ତାଙ୍କର ଆହାର ନାହିଁ, ନିଦ୍ରା ନାହିଁ । କ୍ଲାନ୍ତ ଶ୍ରାନ୍ତ ହୋଇ ସେ ଗୋଟିଏ ଉନ୍ମୁକ୍ତ ପ୍ରାନ୍ତରରେ ଶୋଇ ପଡ଼ିଲେ । ଆକାଶରେ ସେତେବେଳେ ସପ୍ତତାରକା ସମନ୍ୱ ପ୍ରଶ୍ନ-ବାଚକ ଚିହ୍ନଟି ଅଧିକ ଜାଜ୍ୱଲ୍ୟମାନ ହୋଇ ଉଠିଛି ।

ପରଦିନ ପ୍ରଭାତ ସମୟରେ ଗୌତମ ଦେଖିଲେ ସେ ଉରୁବେଳ ଅରଣ୍ୟର ଗୋଟିଏ ଅତି ରମଣୀୟ ସ୍ଥାନରେ । ଚାରି ଦିଗର ନିବିଡ଼ ଅରଣ୍ୟ ମଧ୍ୟରେ କୂଳସ୍ୱନା ନେରଞ୍ଜରା ପ୍ରବାହିତା । ସ୍ଥାନେ ସ୍ଥାନେ

ସ୍ନାନ ମଣ୍ଡପ । ବନାନ୍ତର ଉପାନ୍ତରେ ବିସ୍ତୀର୍ଣ୍ଣ ଶସ୍ୟ କ୍ଷେତ୍ର ଏବଂ ଦୂରରେ ଶାନ୍ତ ସ୍ନିଗ୍ଧ ଜନପଦ । ସମସ୍ତ ଦୃଶ୍ୟଟି ଯେପରି ଗୋଟିଏ ଚିତ୍ରପଟ ।

ଗୌତମ ନେରଞ୍ଜରାରେ ଅବଗାହନ କରି ତାର ତଟରେ ଚିନ୍ତାମଗ୍ନ ହୋଇ ଉପବେଶନ କଲେ ।

...ଜଳସିକ୍ତ କାଷ୍ଠରୁ କଦାପି ଅଗ୍ନିର ଉଦ୍ଭବ ହୋଇ ନ ପାରେ । କେବଳ ଶୁଷ୍କ କାଷ୍ଠରୁହିଁ ଅଗ୍ନିର ସମ୍ଭବ । କାମନାସିକ୍ତ ଏ ଶରୀରରେ ଜ୍ଞାନାଗ୍ନି ଜାତ ହେବା ଅସମ୍ଭବ । କଠୋର କୃଚ୍ଛ୍ର ସାଧନା ଦ୍ୱାରା ଏ ଶରୀରରୁ ସମସ୍ତ କାମନା ନିଷ୍କାସିତ କରିବାକୁ ହେବ । ଏଇ ରମଣୀୟ ସ୍ଥାନ ମୋର ସାଧନାର କ୍ଷେତ୍ର ହେଉ ।

କୁହୁ, କୁହୁ, କୁଉ...ଉ...ଉ ହୁ ।

ଗୌତମ ଇନ୍ଦ୍ରିୟର ସମସ୍ତ ଦ୍ୱାର ରୋଧ କରି ଚିନ୍ତା କରିବାକୁ ଲାଗିଲେ । ତାଙ୍କର ମୁଖ ଗହ୍ୱରରେ ବାୟୁ ପ୍ରବେଶ କରି ମୃଦୁ ସ୍ୱନ ନିର୍ଗତ ହେବାରୁ ସେ ଦାନ୍ତରେ ଦାନ୍ତ ଚାପି ମୁଖ ବନ୍ଦ କଲେ ଓ ଜିହ୍ୱାକୁ ତାଳୁରେ ଦୃଢ଼ ଭାବରେ ଚାପି ଧରିଲେ । ଧୀରେ ଧୀରେ ସେ ନିଶ୍ୱାସ ନିୟନ୍ତ୍ରଣ କରି କିଛିଦିନ ପରେ ନିଶ୍ୱାସ ନେବା ସ୍ଥଗିତ କଲେ । ଧମନୀରେ ତୀବ୍ର ବେଗରେ ମସ୍ତିଷ୍କ ଆଡକୁ ରକ୍ତପ୍ରବାହର ଶବ୍ଦ ସେ ଶୁଣିବାକୁ ପାଇଲେ । ଥରେ ମନେ ହେଲା ତାଙ୍କର ତାଳୁ ଦୁଇଭାଗ ହୋଇ ଯାଉଚି । ଗୌତମ ତଥାପି ନିଶ୍ଚଳ ।

ପ୍ରତିଦିନ ନିଜର ଆହାର ପରିମାଣ ହ୍ରାସ କରି ଶେଷକୁ ସେ ଗୋଟିଏ ମାତ୍ର ଶସ୍ୟ କଣା ଆହାର କରିବାକୁ ଲାଗିଲେ । ଦିନେ ସେ ଶସ୍ୟ କଣା ମଧ୍ୟ ତ୍ୟାଗ କରି ଆହାର କଲେ ବନ୍ୟ ତୃଣ ।

କିନ୍ତୁ ଏ ତୃଣ ମଧ୍ୟ ରସମୟ...

ତୃଣ ତ୍ୟାଗ କରି ଗୌତମ ଶୁଷ୍କ ଗୋମୟ ଆହାର କଲେ ।

ସମସ୍ତ ଶରୀର ବୃହତ୍ ଅଗ୍ନିମୟ ପାବକରେ ସ୍ଥିତବତ୍ ତାଙ୍କର ମନେ ହେଲା । କେତେବେଳେ ମନେ ହେଲା ସହସ୍ର ଦନ୍ତୁରିତ ଛୁରିକା ଦ୍ୱାରା ତାଙ୍କର ଉଦର କିଏ ଧୀରେ ଧୀରେ କର୍ତ୍ତନ କରୁଅଛି ।

ଗୌତମ ତଥାପି ନିଶ୍ଚଳ, ସ୍ତବ୍ଧ, ମୌନ ।

କିନ୍ତୁ କାହିଁ ସେ ଜ୍ଞାନର ଆଲୋକ ? କାହିଁ ଏ ଜୀବନ ପ୍ରହେଳିକାର ସମାଧାନ ? କାହିଁକି ଏ ଜୀବନର ସୃଷ୍ଟି ? କାହିଁକି ପୁଣି ମୃତ୍ୟୁ ? କେଉଁଥିରୁ ଏହାର ଉଦ୍ଭବ, କେଉଁଥିରେ ଏହାର ବିଲୋପ ? ସମାଧାନର ଉତ୍କଣ୍ଠାରେ ଗୌତମଙ୍କ ଶ୍ୱାସରୋଧ ହୋଇ ଆସିଲା ।

···ଏ ଜୀବନର ବିଲୋପ ହିଁ ଶ୍ରେୟ ଯଦି ସମାଧାନ ଅସମ୍ଭବ···

···ବିଲୋପ ଦ୍ୱାରା ସମାଧାନ ହେବ କିପରି ? ନା, ଶରୀରକୁ ଯାତନା ଦେଇ ସମାଧାନ ଅସମ୍ଭବ । ଶରୀରକୁ ଯେତେ ଯାତନା ଦେଉଛି ସେ ସେତେ ପ୍ରାଧାନ୍ୟ ଲାଭ କରୁଛି ।···

ଗୌତମ ଧୀରେ ଧୀରେ ଗାତ୍ରୋତ୍‌ଥାନ କରି ଆହାର ସଂଗ୍ରହ କରି ଆହାର କଲେ । ଯେଉଁ ପାଞ୍ଚଜଣ ତପସ୍ୱୀ ଅଦୂରେ ଗୌତମଙ୍କ ସହିତ ତପସ୍ୟା କରୁଥିଲେ ସେମାନେ ଗୌତମଙ୍କୁ ଆହାର କରିବାର ଦେଖି କାଳେ ସେମାନଙ୍କ ମନ ଆହାର ପ୍ରତି ଆକୃଷ୍ଟ ହେବ ସେହି ଭୟରେ ସେ ସ୍ଥାନ ଛାଡ଼ି ପଳାୟନ କଲେ ।

ଆହାର ପରେ ଗୌତମ ସୁସ୍ଥ ହୋଇ ଧ୍ୟାନ ମଗ୍ନ ହେଲେ । ପୃଥିବୀର ଜନ୍ମରୁ ଜୀବନ ପ୍ରବାହର ପ୍ରତ୍ୟେକ ଅବସ୍ଥା ତାଙ୍କ ମାନସ ପଟରେ ଉଦ୍ଭାସିତ ହେବାକୁ ଲାଗିଲା । ଯୁଗେ ଯୁଗେ ବଞ୍ଚି ରହିବାର କାମନା ଏବଂ ସେ କାମନାରୁ ଜାତ କର୍ମ ଏବଂ କର୍ମରୁ ଜାତ ଦୁଃଖ,

ପ୍ରତ୍ୟେକ ଜୀବର ଦୁଃଖ, ସେ ପରିଷ୍କାର ଅନୁଭବ କରି ପାରିଲେ । ଜ୍ଞାନର ଆଲୋକରେ ତାଙ୍କ ମୁଖମଣ୍ଡଳ ଦିବ୍ୟ ଜ୍ୟୋତି ଧାରଣ କଲା ।

...ପାଇଛି, ଜ୍ଞାନର ଆଲୋକ ମୁଁ ପାଇଛି...

ଗୌତମ ଧୀରେ ଧୀରେ ଆସନ ତ୍ୟାଗ କରି ଆଖି ମେଲି ଚାରିଆଡ଼କୁ ଚାହିଁଲେ । ମନ ତାଙ୍କର ପ୍ରଶାନ୍ତ, ସ୍ଥିର, ନିଶ୍ଚିନ୍ତ ।

...ମୁଁ ବୁଦ୍ଧ, ଜୀବର ଦୁଃଖ ମୁଁ ମୋର ଜ୍ଞାନଦ୍ୱାରା ଦୂର କରିବି...

...କିଏ ମୋର ପ୍ରଥମ ଶିଷ୍ୟ ହେବ ?

ବୁଦ୍ଧ ଧୀରେ ଧୀରେ ଅଗ୍ରସର ହେଲେ । ପ୍ରତ୍ୟେକ ପଦ-କ୍ଷେପରେ ଆନନ୍ଦର ଗୀତି ଝଙ୍କୃତ ହେବାକୁ ଲାଗିଲା ।

ଅନତିଦୂରେ ସନ୍ନ୍ୟାସୀଙ୍କୁ ଦେଖି ବୁଦ୍ଧ ତାଙ୍କୁ ସଙ୍କେତ ଦ୍ୱାରା ଡାକିଲେ । ସନ୍ନ୍ୟାସୀ ସ୍ମିତ ହାସ୍ୟ କରି ବୁଦ୍ଧଙ୍କ ସମ୍ମୁଖରେ ଛିଡ଼ା ହେଲେ । ବୁଦ୍ଧ ଚିହ୍ନି ପାରିଲେ ଏ ପୂର୍ବର ସେହି ସନ୍ନ୍ୟାସୀ ।

—ସନ୍ନ୍ୟାସୀ, ମୁଁ ବୁଦ୍ଧତ୍ୱ ପ୍ରାପ୍ତ ହୋଇଛି ।

ସନ୍ନ୍ୟାସୀ ଅଭିବାଦନ କଲେ । ଦୃଷ୍ଟି ତାଙ୍କର କିନ୍ତୁ ପୂର୍ବପରି ଉଦ୍‌ଭ୍ରାନ୍ତ ।

—ମୁଁ ଚରମ ସତ୍ୟ ଲାଭ କରିଛି ।

ସନ୍ନ୍ୟାସୀ ଉତ୍‌କଣ୍ଠ ହୋଇ ଚାହିଁଲେ ।

—ଏ ଜୀବନ ଦୁଃଖପୂର୍ଣ୍ଣ ।

—ଦୁଃଖ ? ସନ୍ନ୍ୟାସୀ ଧୀରେ ଧୀରେ ମସ୍ତକ ଚାଳନା କଲେ ।

ଦୁଃଖର କାରଣ କାମନା, ବୁଦ୍ଧ ନିଶ୍ଚୟତା ଜ୍ଞାପକ ସ୍ୱରରେ କହିଲେ ।

—କାମନା ? ସନ୍ନ୍ୟାସୀ ସନ୍ଦିଗ୍‌ଧ ଭାବରେ ପଚାରିଲେ ।

—କାମନାର ବିନାଶରେ ଦୁଃଖର ବିନାଶ, ବୁଦ୍ଧ ଦୃଢ଼ କଣ୍ଠରେ କହିଲେ ।

—ବିନାଶ ? ସନ୍ନ୍ୟାସୀ ସ୍ମିତ ହାସ୍ୟ ସହ ପଚାରିଲେ ।

—ସନ୍ନ୍ୟାସୀ ତୁମେ ଉଦ୍‌ଭ୍ରାନ୍ତ । ମୁଁ ବୁଦ୍ଧ ।

—ବନ୍ଧୁ, ହୋଇପାରେ । ତୁମ୍ଭେ ଅଗ୍ରସର ହୁଅ ବନ୍ଧୁ ।

ସନ୍ନ୍ୟାସୀ ଅନ୍ୟ ମାର୍ଗରେ ଅଗ୍ରସର ହେଲେ ।

ବୁଦ୍ଧ ରାଜଗିର ଆଡ଼େ ଅଗ୍ରସର ହେଉ ହେଉ ଭାବିଲେ, ମୋର ପ୍ରଥମ ଶିଷ୍ୟ ମୋର ସତ୍ୟର ପ୍ରଥମ ସନ୍ଦେହୀ । ଚରମ ସତ୍ୟ ପାଇବା ପାଇଁ ମନୁଷ୍ୟ ବୁଦ୍ଧିର ବିକାଶ ସୁନିଶ୍ଚିତ ।

...କିନ୍ତୁ...କିନ୍ତୁ...ସନ୍ନ୍ୟାସୀ କଅଣ ଭାବୁଚନ୍ତି ଦୁଃଖ ବା ସୁଖର ଅନୁଭୂତି ମନର ବିକାର ମାତ୍ର ଏବଂ ଚରମ ସତ୍ୟ ଦୃଷ୍ଟିରୁ ଦୁହେଁ ଏକନିଁ ନିୟମ ଦ୍ୱାରା ସୃଷ୍ଟ ତେଣୁ ଦୁହିଁଙ୍କ ଭିତରେ ମୌଳିକ ପାର୍ଥକ୍ୟ ନାହିଁ ? ଶୁଷ୍କକାଷ୍ଠ ଓ ପ୍ରସ୍ଫୁଟିତ କୁସୁମ ଦୁହେଁ ହିଁ ବିରାଟର ବିଭିନ୍ନ ପ୍ରକାଶ ମାତ୍ର ତେଣୁ ଦୁହେଁ ହିଁ ମହାନ ?



# ଦନେଇ ଚୁଉଣ

ଉଃ ! ସେ କ ଗାଳ ! ଅବଶ୍ରମ ଖଇବାଣ ଫୁଟୁଚ !!

ଚ୍ଛିଃ ଛିଃରେ ଅବଗୁଣୀ ନଇଶୁଆ, ଗାତପସା ଚୁଣ୍ଡ୍ରାକନାଖିଆ — ଆ — ଆ ।

ହାଃ ହାଃରେ ଠୁଉଆ, କୋଢିଆ, ନୁଖୁରବାଲରେ ଫିରେଇ କାଟିଆ — ଆ — ଆ ।

ହାତ୍ ହାତ୍ (ଭୁମିରେ ପଦାଘାତ ସହ) ହାତ୍ ମୋ ପୋଡ଼ା କପାଲକୁ ଭୁ — ଉ — ଉ ।

ଥୁଃ ଥୁଃ ଥୁଃ (ଭୁମିରେ ଛେପ ପକାଇ) କାହିଁକି ତୁ ଜନମ ଯା ନେଲୁ—ଉ—ଉ—ଉ ।

ଗାଳର ସେ ଗୋଟାଏ ଅପୂର୍ବ ସାହିତ୍ୟ ! ଛନ୍ଦ, ଯତିପାତ ଓ ଭାବଭଙ୍ଗୀର ଅପୂର୍ବ ସମାବେଶ !

ଘରର ଅନ୍ୟାନ୍ୟ ସବୁ ଲୋକେ ଅବାକ୍ ଭାବରେ ଛିଡ଼ା ହୋଇ ସେ ସାହିତ୍ୟ ଶୁଣନ୍ତି ।

କଛିକ୍ଷଣ ଅବିଶ୍ରାମ ଗାଳ ଗୁଲଲା ପରେ ଦନେଇ ବୋଉ ଧଇଁସଇଁ ହୋଇ ପିଣ୍ଡାରେ ବସି ପଡ଼ଲା ।

ବନେଇ ଅଦୂରେ ଛୁଞ୍ଚା ହୋଇ ପିଜୁଳିଗଛରେ ପାଣି ଢାଳୁଛି ନିର୍ବିକାର ଭାବରେ । ତାର ବେକପାଚିଲା ବାଳଗୁଡ଼ିକ ଚୈତ୍ର ପବନରେ ଫୁରୁ ଫୁରୁ ହୋଇ ଉଡ଼ୁଛି । ବୟସ ଦୋଷରୁ ବାଳ-ଗୁଡ଼ିକ ପାଚି ନାହିଁ । ବୟସ ହେବ ତାର ପଞ୍ଚବିଂଶ । ବାପା ବିଦ୍ରୂପ କରି କୁହନ୍ତି "ନୁହେଁ ବୃଦ୍ଧ ସେଇ ଜନ ଶୁକ୍ଳ କେଶ ଅଟେ ଯାର ଶିର" । ବନେଇ ଭାଇକୁ 'ବୁଢ଼ା' କହିଲେ ସେ କୁହେ, ବୟସ ଦୋଷରୁ ନୁହଁ, ବାତ ଦୋଷରୁ ବାଳଗୁଡ଼ିକ ଅକାଳ ପକ୍ୱତା ଲାଭ କରିଛି ।

ବନେଇ ବୋଉ ପାଣି ଗିଲାସେ ପିଇ ପିଣ୍ଡାରେ ଶୋଇ ପଡ଼ିଲା । ବନେଇ ପିଜୁଳି ଗଛରେ ପାଣି ଦେଇ ସାରି ବୋଉ ପାଖରେ ବସି ପଡ଼ିଲା । ଅଭିମାନରେ ବୋଉ ମୁହଁ ସେ ପାଖକୁ କରି ଶୋଇ ପଡ଼ିଲା ।

ବନେଇ ଭାଇ ଗମ୍ଭୀର ଭାବରେ ପଚାରିଲା, ଆଲୋ ବୋଉ, ବୋଉ ମ, ଏ ବୋଉ, ଆଚ୍ଛା କହିଲୁ ଭଲା, ଏ ଚୈତ୍ର ମାସରେ ପବନଟା ଗରମ ହେଲେ କଅଣ ହବ କେମିତି ଗୋଟାଏ ଉଦାସିଆ ଭାବରେ ବହେ କାହିଁକି ? ଦେଖିଲୁ, କେମିତି ଶୁଖିଲା ପତର ସବୁ ଉଡ଼େଇ ଦେଇ ଯାଉଛି ! କହିଲୁ ବୋଉ, ଏ ମାସରେ କାହିଁକି ପତର ସବୁ ଶୁଖି ଝଡ଼ି ପଡ଼େ !!

(ମୋର ମନେ ପଡ଼ିଗଲା ଶେଲିଙ୍କର 'ପଶ୍ଚିମାପବନର ଗାନ'— ଯେଉଁ ପବନ ଶୁଖିଲା ପତର ଉଡ଼ାଇ ଦିଏ, ସେଇ ବାଣ୍ଟି ଦେଇ ଯାଏ ସୃଷ୍ଟିର ବୀଜ)

ବନେଇ ଭାଇ କିନ୍ତୁ ପ୍ରଶ୍ନ ପଚାରି ଦେଇ ଆଶ୍ଚର୍ଯ୍ୟ ଭାବରେ ଆକାଶକୁ ଚାହିଁ ରହିଛି, କେମିତି କା···କା କରି ଦଳେ କାଉ ଉଡ଼ି ଯାଉଛନ୍ତି ବସାକୁ । ପ୍ରଶ୍ନଗୁଡ଼ିଏ ପଚାରିବା ସତ, କିନ୍ତୁ ଉତ୍ତର

ପାଇବାକୁ ସେ ମୋଟେ ଆଗ୍ରହୀ ନୁହଁ, ପ୍ରଶ୍ନ ପଚାରିବାରେ ତାର ଯେପରି ଆନନ୍ଦ ।

ଦିନେଇ ଭାଇର ପ୍ରଶ୍ନ ପଚାରିବାର ଢଙ୍ଗ ଏମିତି, ପୂର୍ବାପର ପ୍ରସଙ୍ଗ ବାଦ ଦେଇ ଦୁମ୍ କରି ଏମିତି କେତେଗୁଡ଼ିଏ ଅବାନ୍ତର ପ୍ରଶ୍ନ ପଚାରି କିଛିକ୍ଷଣ ଶୂନ୍ୟ ଦୃଷ୍ଟିରେ ଆକାଶକୁ ଚାହିଁ ରହି ସେ ଅନ୍ୟମନସ୍କ ଭାବରେ ଉଠି ଚାଲିଯାଏ ତରତର ହୋଇ । ଲୋକେ କୁହନ୍ତି, ପାଗଳାଟା, ବାୟାଟା ।

ଥରେ ମୁଁ ତାକୁ ଅଟକାଇ ବାଧ କରିଥିଲି ଏମିତି କେତେ ଗୁଡ଼ିଏ ଅବାନ୍ତର ପ୍ରଶ୍ନର ଉତ୍ତର ଶୁଣିବାକୁ । ତା ବେକ ଧରି ବସାଇ କହିଲି, ଆମ ରାଜନୀତି ଆଲୋଚନାକୁ ଦବାଇ ଗୁଡ଼ାଏ ଏଣୁ ତେଣୁ କଅଣ ପଚାରିଲୁ ଯଦି ଶୁଣ୍ ତା ଉତ୍ତର ।

ଛଟିପିଟି ହୋଇ ସେ ଖସି ପଳାଇ ଯାଇ କହିଲା, ଉତ୍ତର ପୁତ୍ତରରୁ କଅଣ ମିଳିବ ।

ସେଦିନ ମୋର ମନେ ହୋଇଥିଲା, ସତେ ତ, ପ୍ରଶ୍ନ ପଚାରେ ମନୁଷ୍ୟର ନିର୍ବିକାର ନିରହଙ୍କାରୀ ମନ । ଧୂଳିକଣାଠାରୁ ଆରମ୍ଭ କରି ବିରାଟ ସୂର୍ଯ୍ୟ ପର୍ଯ୍ୟନ୍ତ ସବୁଥିରେ ବୈଚିତ୍ର୍ୟ ଦେଖି ଯେ କୁହେ, ନ ତତ୍ର ଚକ୍ଷୁର୍ଗଚ୍ଛତି ନ ବାଗ୍‌ଗଚ୍ଛତି ନୋ ମନଃ, ନ ବିଦ୍ମୋ ନ ବିଜାନୀମୋ ଯଥୈତଦନୁଶିଷ୍ୟାତ୍—ହେ ବିରାଟ ମୁଁ ତ ତମକୁ ନିଜେ ବୁଝିପାରୁ ନାହିଁ, ଅପରକୁ ବୁଝାଇବି କଅଣ ! ସୃଷ୍ଟିର ନାନାରୂପ, ନାନା ପ୍ରକାଶ ଦେଖୁ ଦେଖୁ ଯିଏ ନିଜର ସତ୍ତା ଭୁଲି-ଯାଏ ସିଏ ପଚାରେ ପ୍ରଶ୍ନ ଆନନ୍ଦର ଆତିଶଯ୍ୟରେ । ଉତ୍ତର ଦିଏ ମନୁଷ୍ୟର ଅହଙ୍କାରୀ ମନ । ଯିଏ କୁହେ ସେ ସୃଷ୍ଟି ତତ୍ତ୍ୱ ବୁଝି ପାରିଛି, ପ୍ରକୃତିର ରହସ୍ୟ ସେ ଭେଦ କରି ପାରିଛି ତାର ତୀକ୍ଷ୍ଣ ବୁଦ୍ଧି ସାହାଯ୍ୟରେ ବା ଅଲୌକିକ ଐଶ୍ୱରିକ ଶକ୍ତି ସାହାଯ୍ୟରେ ।

ସେ କୁହେ, ହେ ଅଜ୍ଞ ମାନବଗଣ ଶ୍ରବଣ କର ସେ ତତ୍ତ୍ୱ । ଅଥବା ଉତ୍ତର ବାଢ଼େ ମନୁଷ୍ୟର ଦୁର୍ବଳ ମନ । କିଛି ନ ଜାଣି ପାରିବାର ଆତଙ୍କମୟ ଅବସ୍ଥାରୁ ଉଦ୍ଧାର ପାଇବାକୁ ଯିଏ ଗୋଟିଏ ଘଟଣାର କୌଣସି ଗୋଟିଏ କାରଣ ବାହାର କରି ମନରେ ସାହସ ସଞ୍ଚୟ କରିବାକୁ ଚାହେଁ, ନିଜର ବୁଦ୍ଧି ବଳ ଦେଖି ନିଜେ ମୁଗ୍ଧ ହୁଏ । ଯସ୍ୟାମତଂ ତସ୍ୟ ମତଂ ମତଂ ଯସ୍ୟ ନ ବେଦ ସଃ, ଅବିଜ୍ଞାତଂ ବିଜାନତାମ୍ ବିଜ୍ଞାତଂ ଅବିଜାନତାମ୍—ଯିଏ କୁହେ ସେ ଜାଣି ପାରିଚି ସେ ଜାଣି ନାହିଁ, ଯିଏ କୁହେ ଜାଣି ପାରିନାହିଁ ସେ ଜାଣିଚି !!!

ଦନେଇ ବୋଉ ଆମ ଘରେ ବିଧବା ହେବା ଦିନରୁ ରହିଛି । ଆମେ କରଣ ଏବଂ ସେ ବ୍ରାହ୍ମଣୀ । ତଥାପି ସେ ଆମ ଘରେ ତାର ପନ୍ଦର ବର୍ଷ ବୟସରୁ ଅଛି ଆମ ଘରର ମଣିଷ ଭଳି । ଦନେଇର ଜନ୍ମ ଏବଂ ତାର ଦୁଇମାସ ପରେ ବାପାର ମୃତ୍ୟୁ । ମୋ ବୋଉର ଦନେଇ ବୋଉ ଧରମ ଝିଅ ମଧ୍ୟ ସେଇ ଦିନୁ । ଦନେଇ ବୋଉର ଆଶାଥିଲା, ଆମ ଘରେ ରହି ଦନେଇ ମଣିଷ ହବ, ପାଠ ପଢ଼ିବ, ବଡ଼ ଚାକିରି କରିବ । ପିଲାବେଳୁ ମୁଁ ଓ ଦନେଇ ଏକାସାଙ୍ଗରେ ପାଠ ପଢ଼ିଚୁ । ମୁଁ ବହୁତ ପାଠ ପଢ଼ିଥିବାରୁ ବର୍ତ୍ତମାନ ବଡ଼ ଚାକିରି କରିଚି, ବଂଶର ମର୍ଯ୍ୟାଦା ବଢ଼ାଉଚି । କିନ୍ତୁ ଦନେଇ ବୋଉର ଆଶା ଧୂଳିସାତ୍ ହୋଇଚି ।

ଜଣେ ଜଣେ ଆଅାନ୍ତି ଜୀବନ ଯେଉଁମାନଙ୍କ ପକ୍ଷରେ ଗୋଟିଏ ମହତ୍ ଉଦ୍ଦେଶ୍ୟ, ସେମାନଙ୍କର ପ୍ରେରଣା 'ଉଦ୍ଦେଶ୍ୟ ସାଧନ ଅବା ଶରୀର ପାତନ' । ପିଲାଦିନୁ ହୁଏତ ଠିକ୍ କରି ଦେଲେ ବଡ଼ ଇଞ୍ଜିନିୟର ବା ବଡ଼ ଡ଼ାକ୍ତର ବା ଆଇ. ଏ. ଏସ୍. ହେବେ । ପାଠ ପଢ଼ିବା ବେଳୁ ଲାଗି ପଡ଼ିଲେ ତାକୁ ଉଦ୍ଦେଶ୍ୟ ରଖି ନିଜକୁ

ଗଢ଼ିବାକୁ । ଇସ୍କୁଲ କଲେଜରେ ପାଠ ପଢ଼ା ସରିଲା, ବଡ଼ ଗୁଳିର କଲେ, ନିଜର ଅକ୍ଲାନ୍ତ ପରିଶ୍ରମ ଫଳରେ ଧାପେ ଧାପେ ଉଠି ଚରମକୁ ଯାଇ ଅବସର ନେଲେ । ସେମାନଙ୍କର ଜୀବନକୁ ଅନ୍ୟ ପିତାମାତା ସେମାନଙ୍କ ପୁଅମାନଙ୍କ ଆଗରେ ଆଦର୍ଶ ହିସାବରେ ଥୋଇ କୁହନ୍ତି, ଦେଖ୍ ଅମୁକ କେମିତି ବଡ ହୋଇଚି, ବିଦ୍ୟା-ସାଗର କପରି ପିଲାଦିନରୁ ରାସ୍ତା ଆଲୁଅରେ ପାଠପଢ଼ି ମଧ୍ୟ ବଡ଼ ହୋଇଥିଲେ ! ଆଦର୍ଶ ରଖି ନିଜକୁ ଗଢ଼ିବାକୁ ହେବ, ନ ହେଲେ ବଡ଼ ହୋଇ ପାରିବୁ ନାହିଁ । ଏ ଆଦର୍ଶ ମୋତେ ଉଦ୍‌ବୁଦ୍ଧ କରିଚି ।

ଚିଡ଼ମାଡ଼େ ଯେତେବେଳେ ଦେଖେ ଏହି ବଡ ହେବା ଆଦର୍ଶ ଅନ୍ୟ କେତେ ଜଣକୁ ଆକୃଷ୍ଟ କରେ ନାହିଁ, ଯେଉଁମାନଙ୍କ ପକ୍ଷରେ ଜୀବନ ଗୋଟାଏ ଉଦ୍ଦେଶ୍ୟ ନୁହଁ, ପ୍ରକାଶ ମାତ୍ର; ଯେଉଁମାନଙ୍କ ପକ୍ଷରେ ପ୍ରକାଶ ଯେପରି ହେଉନା କାହିଁକି ଆନନ୍ଦମୟ, ଆଶ୍ଚର୍ଯ୍ୟ-ମୟ, ଯେଉଁମାନେ କୁହନ୍ତି ନର୍ଦ୍ଦମାର କୀଟ ଓ ମୋ ମଧ୍ୟରେ କୌଣସି ପ୍ରଭେଦ ନାହିଁ । ଝଡରେ ଶୁଖିଲା ପତ୍ରପରି ସେମାନଙ୍କ ଜୀବନଯାତ୍ରା । ମୁଁ ଅକ୍ଲାନ୍ତ ପରିଶ୍ରମ କରି ବଡ ହୋଇଚି, ଅଥଚ ମୋ ଆଉ ଅଇଣ୍ଠୁ ଭିତରେ କିଛି ତଫାତ୍ ନାହିଁ !

ଦିନେଇ ଭାଇର ଜୀବନ ଗୋଟିଏ ଶୁଖିଲା ପତ୍ରର । ମୂର୍ଖ ନୁହ ସେ, ମ୍ୟାଟ୍ରିକୁଲେସନ୍ ପର୍ଯ୍ୟନ୍ତ ପଢ଼ିଚି । ଆମ ଘରର ଗୃହପୁରୁଷର ଅଭିଜାତ୍ୟ ଅନୁସାରେ ମୋର ଏପାଖ ସେପାଖ ହେବାର କାଟନାହିଁ, ସିଧାସଳଖ ଏମ୍. ଏ. ପାସକରି ବଡ ଗୁଳିରି କରି ଧମା ଢରେ ବାହାହୋଇ ବର୍ତ୍ତମାନ ସମାଜରେ ମୁଁ ଜଣେ ଗଣ୍ୟମାନ୍ୟ ବ୍ୟକ୍ତି !

ମୁଁ ଯେତେବେଳେ ଥାଏ ଢେଙ୍କାନାଳରେ, ସେତେବେଳେ ଦିନେ ସକାଳୁ ଉଠି ବାହାରକୁ ଆସି ଦେଖିଲି ବାହାରର ପିଣ୍ଡାରେ କିଏ ଜଣେ ଘୋଡ଼ା ଘାଡ଼ ହୋଇ ଶୋଇଚି ।

କିଏ କି, ଚିତ୍କାର କଲି । କାହାର ଏତେ ସାହସ ଯେ ଜଣେ ଡାକ୍ତରଙ୍କ ପିଣ୍ଡାରେ ବିନା ଅନୁମତିରେ ଶୋଇଚି !

ମୋର ଚିତ୍କାର ଶୁଣି ମୁହଁ ଉପରୁ ସାମାନ୍ୟ ଟିକିଏ ଲୁଗା ଛାଡ଼ି ଦନେଇ ଭାଇ କହିଲା, କାହିଁକି ପାଟିଟା କରୁଚୁ ?

ଆଶ୍ଚର୍ଯ୍ୟ ହୋଇ ପଚାରିଲି, କି ହୋ, ଦେଖାନାହିଁ, ପଚର ନାହିଁ ତୁମେ କୁଆଡ଼େ ଦନେଇ ଭା···?

ଚାକିରି କରିବାକୁ ବୋଉ ପଠାଇ ଦେଇଚି, ସେ ନିର୍ଲିପ୍ତ ଭାବରେ ଚାଦର ଭିତରୁ ଉତ୍ତର ଦେଇ ପୁଣି ଶୋଇପଡ଼ିଲା ।

ଚାକିରି କଅଣ ରାସ୍ତାରେ ଘାଟରେ ପଡ଼ିଚି ଯେ ଗୋଟେଇ ଅଣ୍ଟିରେ ପୂରେଇ ଦେବ, ଶେଷଃ, ବିରକ୍ତ ହୋଇ କହିଲି । ମୋର କଥା ଭଙ୍ଗୀରୁ ପରିଷ୍କାର ଜଣାଇ ଦେଲି ଯେ ଏଠି ସେ ସବୁ ଚଳିବ ନାହିଁ ।

ମୁଁ କି ଜାଣେ ସେ କଥା, ହଉ ଦାନ୍ତ ଘଷା ଜିନିଷ ହଉ, ଆଉ ଭାଉଜଙ୍କୁ କୁହ ଗୁହାରି କରିବାକୁ—କହି ସେ ଉଠିଲା ।

ତମର ବିଛଣା ପତର କାହିଁ ? ନିରୁପାୟ ଭାବରେ ପଚାରିଲି ।

ଖଣ୍ଡେ ଦିଖଣ୍ଡ କଅଣ ବୋଉ ଦେଇଥିଲା, ବାଟରେ ଜଣକୁ ଦେଇ ଦେଲି, ସେ ବି ଶୀତରେ ଥରୁଥିଲା, ମୋତେ ବି ବୋଝ ଲାଗୁଥିଲା । ଭାବିଲି ତୋ ଘରେ ଅଭାବ ହବନାହିଁ, ମୋର ପୁଣି ଅଲଗା ଜଞ୍ଜାଳ କଅଣ ହେବ ।

ରାଗରେ ପିତ୍ତ ଜଳିଗଲା । କିଛି ନ କହି ସେଠୁ ଚାଲିଗଲି । କିନ୍ତୁ ଉପାୟ ନାହିଁ । ବାପା ଭାରି ସ୍ନେହ କରନ୍ତି ତାଙ୍କୁ, ଆଉ ବୋଉ ବି ମୋର ସ୍ତ୍ରୀ ନିରୂପମା ବି ବୋଧହୁଏ ତାଙ୍କୁ ଟିକିଏ ସ୍ନେହ ଚକ୍ଷୁରେ ଦେଖେ ।

ଦନେଇ ଭାଇକୁ ବେଶୀ ଦିନ କେଉଁଠି ରହିବାର ଦେଖି ନାହିଁ । ଘରେ ଅଛି, ଖାଉଚି, ପିଉଚି ଆନନ୍ଦରେ ବୁଲୁଚି । ହଠାତ୍ ଦିନେ ସକାଳୁ ଖୋଜିଲାବେଳକୁ ଦନେଇ ଭାଇ ନାହିଁ । ଦନେଇ କୁଆଡେ ଗଲା ? କୁଆଡେ ଗଲା ବାପୁଡ଼ାଟା ? ଖାଇବା ବେଳ ପର୍ଯ୍ୟନ୍ତ ଯଦି ଦନେଇ ନ ଆସେ ତେବେ ଘରେ ସମସ୍ତେ ନିଶ୍ଚିନ୍ତ ହୁଅନ୍ତି ଯେ ଦଽନେଇ ହୁଏତ ସେତେବେଳକୁ ଓଡ଼ିଶାର ବାହାରେ । ଏଇଟା ଏପରି ଅଭ୍ୟାସରେ ପଡ଼ିଗଲାଣି ଯେ ସେଥିପାଇଁ ଦନେଇ ବୋଉ କିମ୍ବା ଘରର ଅନ୍ୟ କାହାରି କିଛି ଭାବେଣି ପଡ଼େନାହିଁ । ଏମିତି ସେ ସାରା ଭାରତ ବୁଲି ସାରିଲାଣି । ଗୋଟାଏ କାବୁଲି ସାଙ୍ଗରେ ଆଫଗାନିସ୍ଥାନ ମଧ୍ୟ ବୁଲିଆସିଲାଣି ।

କିନ୍ତୁ ଢେଙ୍କାନାଳରେ ସେଥର ସେ ଟିକିଏ ବେଶୀଦିନ ରହିଗଲା ଦେଖି ମୁଁ ଟିକିଏ ଆଶ୍ଚର୍ଯ୍ୟ ହେଲି, ବିବ୍ରତ ହେଲି ମଧ୍ୟ ।

ବିବ୍ରତ ହେଲି କାରଣ ସେ ସବୁଆଡେ କହି ବୁଲିଲା, ମୁଁ ତାର ଭାଇ । ତାର ଅଦ୍ଭୁତ ବେଶଭୂଷା, କଥାବାର୍ତ୍ତା ପାଇଁ ମୁଁ କେତେଥର ଉଚ୍ଚ ମହଲରେ ଅପଦସ୍ତ ମଧ୍ୟ ହେଲିଣି । କିନ୍ତୁ ଅସ୍ୱୀକାର କରିବାର ମଧ୍ୟ ଉପାୟ ନାହିଁ ଯେ ସେ ମୋର ଭାଇ ନ ହେଲେ ବି ଭାଇ ଭଳି । ବାଧ୍ୟ ହୋଇ ମୋର ମାନ ସମ୍ମାନକୁ ଜଗି ତାକୁ ଭଲ ଧୋତି ଜାମା କିଣି ଦେଲି । ଗୋଟାଏ ଅଲଗା ଘରେ ତାର ରହିବାର ଜାଗା କରିଦେଲି, ଭଲ ବିଛଣା ମଶାରି ମଧ୍ୟ କିଣି ଦେଲି । ତାର ଗୋଟାଏ ଚାକିରି ପାଇଁ ମଧ୍ୟ ଭିତରେ ଭିତରେ ଚେଷ୍ଟା କଲି । ତାକୁ କହିଥିଲି ମୋ କଚେରୀକୁ ଯାଇ କାମ ଶିଖିବାକୁ । କିନ୍ତୁ ରହିବା ଦିନରୁ ମାସେ ହୋଇଗଲା ତା ସହିତ ମୋର ଥରେ କି ଦୁଇଥର ଦେଖା । ବାବୁ ସକାଳୁ ଗୁହାଳ ଚିନି ପିଆଲା ଖାଇ ପ୍ରାତଃଭ୍ରମଣରେ ବାହାରିଯିବେ ଯେ ଫେରିବେ ଦିନ

ଏଗାରଟା ବେଳକୁ । ତାପରେ ଖାଇସାରି ଯୋଗନିଦ୍ରାରେ ରହିବେ ଦିନ ଚାରିଟା ପର୍ଯ୍ୟନ୍ତ । ତାପରେ ପୁଣି ବାହାରିଯିବେ ଚାରି ପିଆଲା ଚାହା ଖାଇ ସାନ୍ଧ୍ୟ ଭ୍ରମଣରେ, ଫେରିବେ ରାତି ଦଶଟା ।

ଦିନେ ବଡ଼ ସକାଳୁ ଉଠି ତା ଘରକୁ ପଶିଯାଇ ଦେଖିଲି ଦନେଇ ଭାଇ ଶୋଇଛନ୍ତି, ନିଜ ପିନ୍ଧା ଲୁଗାର ଗୋଟିଏ ପଣତ ଘୋଡ଼ି ହୋଇ । ରାଗରେ ମୋର ସର୍ବାଙ୍ଗ ଜଳିଗଲା । ତାକୁ ଗୋଟାଏ ପ୍ରଚଣ୍ଡ ଠେଲା ଦେଇ ଉଠାଇ ପଚାରିଲି, ବ୍ୟାପାର କଅଣ । ମୋର ଜିନିସ ସବୁ କାହିଁ ??

ମୋର ବିଶ୍ୱସ୍ତ ଭୃତ୍ୟ କହିଲା, ଦନେଇ ବାବୁ ସେ ସବୁ ବିକି ଦେଇ ଚାହା ଜଳଖିଆ ଖାଇଦେଇଛନ୍ତି । କ୍ରୋଧରେ ପାଗଳ ହେବା ପାଇଁ ଏହାଠାରୁ ବଳି ଆଉ କଅଣ କାରଣ ଥାଇପାରେ ?

ଦନେଇ ଭାଇ ମୋ ଚାକର ଉପରେ ବିରକ୍ତ ହୋଇ କହିଲା, ଛିଃ, ବାବୁଙ୍କୁ ଏ କଥା କହନ୍ତି ? ସକାଳୁ ରାଗିଲେ ମନ ଖରାପ ହେବନାହିଁ ? ଆରେ ହଁ, ତୋତେ ଆଉ କଅଣ କହନ୍ତି, ତୁ ତ ଜାଣୁ ମୁଁ ଦିନକୁ କେତେଥର ଚାହା ଖାଏ । ଆଜିକା ଆଉ କେତେ-ଥର ଚାହା କରିବ ତୁ କହ । ନା, ନା, ତୁ କହ । ଆରେ ଭାଇ ମୁଁ ଜାଣେ ତୋ ମାନଙ୍କୁ ଜଗି ମୋତେ ଚଳିବାକୁ ହେବ···

ଆଉ, ଆଉ,···ତୁମେ···ତୁମେ···ଏଇକ୍ଷଣି··· । ରାଗରେ ଥରଥର ହୋଇ ଚାଲିଗଲି ।

ସେ ଦିନ ଖାଇବାବେଳ ଗଡ଼ିଗଲା, ଦନେଇ ଭାଇର ଦେଖା-ନାହିଁ ।

ଯାଃ, ଜଞ୍ଜାଳ ଯାଇଛି ।

ଖାଉ ଖାଉ ଗୋଟାଏ ତରକାରିର ଅଦ୍ଭୁତ ସ୍ୱାଦ ପାଇ ଆଶ୍ଚର୍ଯ୍ୟ ହୋଇ ପଚାରିଲି, ଏ ତରକାରିଟା କଅଣ ତୁମର ତରକାରି ରାନ୍ଧିବାର ଗବେଷଣାର ଫଳ ?

ନରୁ ଚଳକୁ ମୁହଁ ପୋଡି କହିଲା, ଏ ଗନ୍ଧବା ବଢେଇଚ ଦିନେଇ । କାଲି ମୁଁ ଗନ୍ଧୁ ଗନ୍ଧୁ ସେ ରୋଷେଇଶାଳକୁ ପଶି ଆସିଲି । ମୁଁ ପରିହାସ କରି ପଚାରିଲି, ମାଛ କେମିତି ରନ୍ଧା ହୁଏ? ସେ କହିଲା ପ୍ରଥମେ ମାଛକୁ ଘିଅରେ ଭଜି ଦିଅ, ହରଡ଼ ଡାଲି ସିଝାଇ ସେଥିରେ ତାକୁ ପକାଅ । ସେଥିରେ ନୁଣ, ହଳଦି ମସଲା ପକାଅ । ତାପରେ ନଡିଆ, ଚିନି ଓ ଦୁଧ ପକାଅ । ସବା ଶେଷରେ ତରକାରୀ ଉତାରିଲା ବେଳେ ଗୁହା ପାଣି । ଦେଖିବ କି ଚମତ୍କାର !

ଥେତ୍, ଉଠାଅ, ଉଠାଅ ଏ ତରକାରୀ ।

ନରୁର ଆଖି ଛଳ ଛଳ ହୋଇଗଲା । ମୋ ମନଟା ବି କେମିତି ଉଦାସ ହୋଇଗଲା । ଗାଁକୁ ଚିଠି ଲେଖିଲି, କଟକକୁ ବାପାଙ୍କ ପାଖକୁ ବି ଚିଠି ଲେଖିଲି । କେଉଁଠୁ କିଛି ଉତ୍ତର ଆସିଲା ନାହିଁ । ବୁଝିଲି ଦିନେଇ ଭାଇ ପୁଣି ଫେରାର୍ । ବର୍ତ୍ତମାନ ହୁଏତ ପ୍ରୟାଗ ବା ବଦରିକାଶ୍ରମରେ କେତେଦିନ ହୁଏତ ଉପାସ ରହିଚି ଅଥବା କା ଘରେ ଗୁକର କାମ କରି ଦୁଇବେଳାର ଆହାର ଜୁଟାଇ ନେଇଚି ।

କିନ୍ତୁ ଗଣେଶପୂଜା ଛୁଟିରେ ଗାଁକୁ ଆସି ଶୁଣିଲି ତା ପୂର୍ବ ଦିନ ଅଧରେ ଦିନେଇ ଭାଇର ହଠାତ୍ ଆବିର୍ଭାବ ହୋଇଚି । ସକାଳୁ ଉଠି ବାପା ଦେଖନ୍ତି ବାହାର ପିଣ୍ଡାରେ ନିଜ ପିନ୍ଧାଲୁଗା ଘୋଡ଼ି ହୋଇ ଦିନେଇ ଘୁଙ୍ଗୁଡ଼ି ମାରୁଚି, ଶରୀରର ନିମ୍ନାର୍ଦ୍ଧ ପିଣ୍ଡା ବାହାରେ ପଡିଚି ଆଉ ବର୍ଷାରେ ଭିଜି ଯାଇଚି ।

ଗଣେଶପୂଜା ଆମ ଘରେ ବଡ ଆଡମ୍ବରରେ ହୁଏ । ଏଥର ବାପା କହିଲେ ପୂଜା କରିବ ଦିନେଇ ।

ପୂଜା ବେଳ ଆସିଗଲା କିନ୍ତୁ ଦିନେଇ କାହିଁ ?

ବୋଉ କହିଲା, ଦେଖି ଆସିଲୁ ପାଣ ସାହିରେ । ଅଗତ୍ୟା ଗଲି ଖୋଜି ବାହାର କରିବାକୁ । ଖୋଜି ଖୋଜି ଯାଇ ପହଞ୍ଚିଲି ପାଣ

ସାହାରେ । ଅନେକେ ସେଠି ତାକୁ ଘେରି ବସିଛନ୍ତି । ଦନେଇ ଭାଇ ସେମାନଙ୍କୁ ବୁଝାଉଚି । ମୁଁ ମାରିବାରେ ପଛରେ ଛିଡ଼ା ହେଲି । ଶ୍ରୋତବ୍ୟର ବିଷୟ ହେଉଚି ଉଡ଼ାଜାହାଜ । କିଛିକ୍ଷଣ ଆଗେ ଗୋଟାଏ ଉଡ଼ାଜାହାଜ ବହୁତ ଉଚ୍ଚରେ ଉଡ଼ିଯାଇଚି, ତାର ମୃଦୁ ଗୁଞ୍ଜନ ଏପର୍ଯ୍ୟନ୍ତ ଶୁଭୁଚି । ଦନେଇ ଭାଇ କହୁଚି, ଦେଖ । ମଣିଷ ବୁଦ୍ଧି କେତେ ! ଲୁହାକୁ ଆକାଶରେ ଉଡ଼ାଉଚି ! ଶିଳ ଶିଳପୁଆ ଗଗନରେ ଉଡ଼ୁଛନ୍ତି ।

ତନେଇ ମଳିକ ବଙ୍କା ଲୋକଙ୍କ ଭଳି ପଦ ଯୋଡ଼ି ଦେଲା, ଶିମୁଳି ତୂଳା କହୁଛି ମୋତେ ରଖ !

ଦନେଇ ଭାଇ ଉତ୍ସାହିତ ହୋଇ କହିବାକୁ ଲାଗିଲା, ହରି ବୋଲ ଭାଇ ହରି ବୋଲ, ଭାସିଲା ପଥର ବୁଡ଼ିଲା ଶୋଲ । ଏ ଉଡ଼ାଜାହାଜ ଯିଏ ବାହାର କରିଚି ସିଏ ବି ମଣିଷ ! ଆଉ ଆମେ ବି ମଣିଷ !! ଆଜି ଦେଖ ଚଇନା କହୁଥିଲା ଏ ଶବ୍ଦ ଉଡ଼ାଜାହାଜର ନୁହ, ଭଅଁର ଘୁଙ୍ଗୁର, ସେ ବି ମଣିଷ ! ସର୍ବେ ହୋଇବେ ଏକାକାର, ବେଦର ନ ଥିବ ବିଚାର ।

କି ଅବାନ୍ତର ଏ କଥାବାର୍ତ୍ତା ! ବିରକ୍ତ ହୋଇ ବାଧା ଦେଇ କହିଲି, ଥାଉ ପୂଜା କରିବ ଆସ । ସମସ୍ତେ ଅନାଇ ବସିଛନ୍ତି ।

ମୋତେ ଦେଖି ଆନନ୍ଦରେ ତାର ଆଖି ଉଜ୍ଜ୍ୱଳ ହୋଇଗଲା । ସେତିକ ମାତ୍ର ତାହାର ସ୍ନେହର ପ୍ରକାଶ । ତରତର ହୋଇ ଉଠି ଆସିଲା ଘରକୁ । ଗାଧୋଇ ଶଟା ଚୈତନ୍ୟ କରି ସେ ପୂଜା କରି ବସିଲା । ନିରୁ ଧୂପ ଜାଳିବାରେ ବ୍ୟସ୍ତ । ଭୋଜି ନୈବେଦ୍ୟ ସଜାଡ଼ୁଚି । ଆଜି ଦନେଇ ଭାଇ ଅବିରାମ ପ୍ରଚଣ୍ଡ ଶବ୍ଦରେ ଘଣ୍ଟା ବଜାଇ ଚାଲିଛି, କେବଳ ଶୁଭୁଚି ତାର ଅନୁସ୍ୱାର ବିସର୍ଗର ଶବ୍ଦ ।

କାନ ଡେରି ଶୁଣିବାକୁ ଚେଷ୍ଟାକଲି, ଅନୁସ୍ୱାର ବିସର୍ଗଗୁଡ଼ିକ ସଂପୂର୍ଣ୍ଣ ସ୍ୱାଧୀନ, ଶବ୍ଦର ପରାଧୀନତା ନାହିଁ ସେମାନଙ୍କର । ଶୁଣିଲି ଅନୁସ୍ୱାର ବିସର୍ଗ ମିଶି ସେ ଏକ ସ୍ୱାଧୀନ ମୁକ୍ତ ବିହଙ୍ଗମର ଧାଡ଼ି ଉଡ଼ି ଯାଉଚି ଆକାଶର ଉଦ୍ଦେଶ୍ୟ ବିହୀନମାର୍ଗରେ । ସବୁ ଶୁଣି ପାରିଲି ନାହିଁ, ଘଣ୍ଟାର ପ୍ରଚଣ୍ଡ ଶବ୍ଦରେ ସେ ଅଦ୍ଭୁତଶ୍ଳୋକ ଅବଲୁପ୍ତ ।

ବହୁ କଷ୍ଟରେ ହସ ଚାପି ରଖି ଛିଡ଼ା ହେଲି । ସେ ଅଦ୍ଭୁତ ପୂଜା ଶେଷ ହେଲା ।

ପଚାରିଲି, ହଇହୋ, ଦନେଇ ଭାଇ, ସେ କି ଶ୍ଳୋକ ବୋଲୁଥିଲ ? କେଉଁ ଶାସ୍ତ୍ରରେ ସେ ଶ୍ଳୋକ ଅଛି । ଦନେଇ ମୁରୁକି ହସି ଜିଭ କାମୁଡ଼ି ମୋ ହାତ ଧରି ପକାଇ କହିଲା, ଛୋଟେ ମୋ ରାଣ, ବାପା ବୋଉଙ୍କୁ କହିବୁ ନାଇଁ ଏ କଥା ।

ସେ ଦିନ ରାତିରେ କିନ୍ତୁ ଦନେଇ ଭାଇକୁ ଗୋଟାଏ ନୂଆ ରୂପରେ ଦେଖିଲି । ଗମ୍ଭୀର ଭାବରେ ସେ ଖଟ ଉପରେ ଶୋଇ ସେ ନିର୍ବାକ୍ ମନରେ କଅଣ ଭାବୁଚି । ଦନେଇ ଭାଇ ଭାବୁଚି ! ମୋର ସଶବ୍ଦ ପ୍ରବେଶ ମଧ୍ୟ ତାଙ୍କୁ ମାଲୁମ ପଡ଼ିଲା ନାହିଁ ।

ଦନେଇ ଭାଇ, ଭାବୁଚ ? ଠେଲି ଦେଇ ଆଶ୍ଚର୍ଯ୍ୟ ଭାବରେ ପଚାରିଲି ।

ଦୀର୍ଘ ନିଃଶ୍ୱାସ ପକାଇ ସେ କହିଲା, ଭାବୁଚି କେମିତିକା ମରଣ ଭଲ, କେଉଁ ବୟସରେ ମଲେ ଭଲ । ହରିସାହୁ ମହାଜନ ମଲା ବେଳକୁ ଟଙ୍କା ଥଳି ଖାଲି ଦରାଣ୍ଡିଲା । ଟଙ୍କା ଥଳି ବୋଲି ନିଜର ଧୁଆ ନିଜ ଖୋସଣିରେ ଗୁଞ୍ଜିଲା । ବୃନ୍ଦାବନ ବାବୁ ମଲେ ଯେ ମରିବା ଦୁଇଘଣ୍ଟା ଆଗରୁ ସାମନାରେ ଟଙ୍ଗା ହୋଇଥିବା ଶ୍ରୀକୃଷ୍ଣଙ୍କ ଚିତ୍ରକୁ ଚାହିଁ ଚାହିଁ ମଲେ । ଜନାର୍ଦ୍ଦନ ମିଶ୍ରେ ଦାନ୍ତ ଘଷୁ ଘଷୁ ସେଇଠି ଟଳି ପଡ଼ିଲେ ।

ମୁଁ ଥମକି ପଡ଼ିଲି ଦନେଇ ଭାଇ କଥା ଶୁଣି ।

ଟିକଏ ଚୁପ ରହି ପୁଣି ସେହି ଅବାନ୍ତର ପ୍ରଶ୍ନର ସୁଅ । ହାଇରେ, ତୁତ ଏତେ ପଢ଼ିଛୁ, ଜୀବନ କଅଣ ? କେମିତି ଏସବୁ ଘଟୁଚି ? କିଏ ଗୋଟାଏ ଭଗବାନ ଅଛି କିରେ ? ଇଏ ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ତାରା, ପୋକ, ମାଛି, ମଶା, ମଣିଷ, ବାଘ ସବୁ ସିଏ କରିଚି ? ଗଛର ମରଣ କରୁଛି ସେଇ, ଗଛରେ ଫୁଲ ଫୁଟାଉଚି ସେଇ ? ପାପ କଅଣ ? ପୁଣ୍ୟ କଅଣ ?

ପ୍ରଶ୍ନ ପଚାରି ସେ ପୁଣି ନୀରବ ରହିଲା । ଉତ୍ତର ଦେବାକୁ ଯାଇ ପ୍ରାଚ୍ୟ ପାଶ୍ଚାତ୍ୟ ଦର୍ଶନ ବୁଝାଇବାକୁ ଲାଗିଲି, ବୈଜ୍ଞାନିକ-ମାନଙ୍କର ମତ କହିବାକୁ ଲାଗିଲି ।

କିନ୍ତୁ ଅନାଇ ଦେଖିଲି ସେ ସେମିତି ଶୂନ୍ୟ ଦୃଷ୍ଟିରେ ଚାହିଁ ରହିଚି । ବୁଝିଲି ମୋ କଥା ସେ ଟିକିଏ ବି ଶୁଣି ନାହିଁ । ବିରକ୍ତ ହୋଇ ଉଠିଗଲି ।

ପରଦିନ ଖାଇବା ବେଳ ଗଡ଼ି ଗଲା । ଦନେଇ ଭାଇର ଦେଖା ନାହିଁ । ଘରେ କିଛି ରନ୍ଧାଯାଇ ନାହିଁ, କେହି ବି ପଚାରିଲେ ନାହିଁ ଗାଁ ଟା ଯାକରେ ଦନେଇ କୁଆଡ଼େ ଗଲା ।

ଦଶବର୍ଷ ହୋଇ ଗଲାଣି । ମହାନଦୀର କେତେ ପାଣି ସାଗର ଗର୍ଭକୁ ଗଲେଣି । ଦନେଇ ଭାଇର ଦେଖା ନାହିଁ । ମୋର ପଢ଼ି ଉଠି ଗଣ୍ୟମାନ୍ୟ ହେବାର ନିର୍ମମ ଚେଷ୍ଟା ସଫଳ ହୋଇଚି । ଦନେଇକୁ ସମସ୍ତେ ଭୁଲି ଗଲେଣି ।

କେବଳ ନିରୂପମା ମଝିରେ ମଝିରେ ସେଇ ଅଦ୍ଭୁତ ତରକାରୀ କରେ । ତରକାରୀର ନା'ଟି ଆମ ଘରେ ହୋଇଚି 'ଦନେଇ ଭୁଜଣ' । ବାପା ଦିନେ ଦିନେ କହନ୍ତି, ବୋହୂ ଆଜି ଟିକେ ଦନେଇ ଭୁଜଣ ରାନ୍ଧିବୁଟି ।

ଦନେଇ ଭୁଜଣ ମୁଁ କେବେ ସ୍ପର୍ଶ ସୁଦ୍ଧା କରି ନ ଥିଲି । ସେ ଦିନ ଖାଇଲି । ବାଃ ବେଶ୍ ଭଲ ଲାଗୁଚି ତ ! ସେଦିନ ଅନେକ ସେଥିରୁ ଖାଇଦେଲି । ଖାଇସାରି ଶୋଇବାବେଳେ ଦନେଇ ଭାଇର ସେଇ ପ୍ରଶ୍ନଗୁଡ଼ିକ ଗୁଡ଼ରେ କେମିତି ଗୋଟାଏ ମୃଦୁ ଧକ୍କା ମାରିବାକୁ ଲାଗିଲା ।

ଡର ମାଡିଲା କାଳେ କଅଣ ହୋଇଯିବ ପରା ।

ଡାକ୍ତର ଡ଼କାଇଲି । ଡ଼ାକ୍ତର ଆଖିପତା, ଜିଭ, ପେଟ ପରୀକ୍ଷା କରି ସବୁ ଶୁଣିସାରି କହିଲେ, କିଛି ନୁହି, ଏ ଆପଣଙ୍କର 'ଦନେଇ ଭୁଜଣ'ର ଗୁଣ । ଟିକିଏ କାରମିନେଟିଭ୍ ମିକ୍‌ଶ୍ଚର ଖାଇଦେଲେ ଭଲ ହୋଇଯିବ ।



# କୁକୁଡ଼ା ଚାଷ

**ଗୋବିନ୍ଦ** ବାବୁଙ୍କ ପାଞ୍ଚବର୍ଷର ପୁଅ ବାପୁର ନୂଆ ଶିଙ୍ଗ ଉଠିଛି । ସେ ଯେଉଁଠି ପାରୁଛି ଶିଙ୍ଗ ଲଗେଇ ଦେଇ ମାଟି ଖୋଳୁଛି । ସକାଳ ନ ପାହୁଣୁ ସେ ଖଣ୍ଡେ କାଗଜ ଧରି ପାଟି କରି ପଢ଼ିବାରେ ଲାଗିଛି । ଅଳ୍ପ କେତେଦିନ ହେବ ସେ 'ଆ'କାର ଚିହ୍ନି ଶିଖିଛି ମାତ୍ର । କିନ୍ତୁ ତାର ଜ୍ଞାନ କେତେ ଦୂର, ସେ ଜ୍ଞାନ ପ୍ରଚାର କରିବା ଯୋଗ୍ୟ କି ନା ଏବଂ ପ୍ରଚାର କଲେ ଅନ୍ୟର କିଛି ଶାରୀରିକ ବା ମାନସିକ ଅସୁବିଧା ହେବ କି ନା ସେ ସବୁ ବିଚାର କରିବାର କାଣ୍ଡଜ୍ଞାନ ତାର ନାହିଁ । ବାପାଙ୍କୁ ସେ ଛବି ବହି କିଣି ଆଣିବାକୁ ଜିଦ ଲଗାଇ ଥିଲା । ଗୋବିନ୍ଦ ବାବୁ ଛବି ବହିର ଦାମ ପାଞ୍ଚଟଙ୍କାରୁ କମ ନାହିଁ ଦେଖି କୁକୁଡ଼ା ଚାଷ ବିଷୟରେ ଗୋଟିଏ ସରକାରୀ ପ୍ରଚାର ବହି ବହୁତ ଛବି ଥିବାରୁ ନିଜ ଅଫିସରୁ ଆଣି ଦେଇଛନ୍ତି । ବାପୁ ପାଟିକରି ସେ ବହି ପଢ଼ି ଚାଲିଛି···

ଏ···ଏ···ହା ଏହା ସଚ ସ···ସ···ଦ (ସ୍ୱତସିଦ୍ଧ) ଯ (ଯେ) ଅ···ବ···ପୂ···ଣ୍ଣ ଗଠନ, ଶ···ଶ···ରର (ଶରୀରର) ଉଁ···ଉଁ···ସ ବଦ (ବୃଦ୍ଧି) ଏବ ଉଁ···ଉଁ···ଉଁ (ସ୍ୱାସ୍ଥ୍ୟରକ୍ଷା) ପାଇ

(ପାଇଁ) ଘିଅ, ଡ଼ାଲି ପନିପରିବା (ପନିପରିବା) ସାଗିକ (ସାଗଙ୍କୁ) ମାଛ, ମାସ (ମାଂସ), ଦିଧ (ଦୁଧ) କମି (କମ୍ବା) ଅ···ଜ···ଣା (ଅଣ୍ଡା) ଉ ଳ ଆ ଉ···ତ···କ···କ···ଷ (ଉତ୍କୃଷ୍ଟ) ଖାଦ (ଖାଦ୍ୟ) ଦରକାର । ଆମ ଛଅ ପିଲାମାନଙ୍କର ଅବୟବ ଗଠନ ହବ ମାନସିକ ବିକାଶର ବିଶେଷ ବ୍ୟାଘାତ ଘଟୁଛି, ବର୍ତ୍ତମାନ ପରିସତି (ପରିସ୍ଥିତି)କି କିକିଡା (କୁକୁଡ଼ା) ପାଳିବା ଦରକାର । କିକିଡା ଅଣା ସବଠାରୁ ବଳକାରକ ।

ବାପୁ କୁକୁଡ଼ା ଚାଷ ବିଷୟରେ ପଢ଼ି ଚାଲିଛି ଅଧିକରୁ ଅଧିକ ଉତ୍ସାହରେ ।

ସକାଳ ହୋଇ ନାହିଁ, ସୁନ୍ଦର ଫାଟିଲାଣି । ଦୂରେ ପୂର୍ବ-ଦିଗ୍‌ବଳୟର ନୀଳାଭ ପାହାଡ଼ ରେଖା ଉପରେ ଉଜ୍ଜ୍ୱଳ ଗୋଲାପି ଆଭା ଧୀରେ ଧୀରେ ରକ୍ତିମ ହୋଇ ଉଠୁଛି । ତା ଉପରକୁ କିଛି ଦୂର ଉଜ୍ଜ୍ୱଳ ହଳଦିଆ ଏବଂ ତା ଉପରକୁ ବାଇଗଣି । ତା ପରେ ଅସୀମ ଅନନ୍ତ ନୀଳାକାଶ । ପଶ୍ଚିମ ଆକାଶରେ ଶୁକ୍ଳ ଦଶମୀର ଚନ୍ଦ୍ର ପାଣ୍ଡୁର ହୋଇ ଆସିଲାଣି । କିନ୍ତୁ ଅଗସ୍ତି ଏ ପର୍ଯ୍ୟନ୍ତ ଦପ୍ ଦପ୍ କରୁଛି । ଶୀତ ସକାଳର ଝଲକାଏ ଥଣ୍ଡା ପବନ ଉତ୍ତରପଟ ଝରକା ଠେଲି ଦେଇ ଘର ଭିତରକୁ ପଶି ଆସିଲା । ଗୋବିନ୍ଦ ବାବୁ ଚାଦରଟା ବେକ ପର୍ଯ୍ୟନ୍ତ ଟାଣି ନେଇ ପୂର୍ବପରି ପଡ଼ି ରହି ଭାବି ଚାଲିଛନ୍ତି ।

ଭାବି ଚାଲିଛନ୍ତି ଜୀବନର ଗତି । ବହୁ ଅଭାବ ଅନଟନ ମଧ୍ୟରେ ମଧ୍ୟ ମନଟି ତାଙ୍କର ପୁରୁଣା ବିଶ୍ଳେଷଣ ମାତି ଛାଡ଼ିନାହିଁ । ନିଦ ଭାଙ୍ଗିବାପରେ ତାଙ୍କର ପ୍ରଥମ ଚିନ୍ତା, ଦୁଶ୍ଚିନ୍ତା କହି ପାରନ୍ତି, ଆସନ୍ନ-ପ୍ରସବା ପତ୍ନୀର ସ୍ୱାସ୍ଥ୍ୟ ଓ ପ୍ରସବ ସମସ୍ୟା । ଏଟି ତାଙ୍କର ହେବ ସପ୍ତମ ସନ୍ତାନ । ପ୍ରତ୍ୟେକ ଥର ପ୍ରସବ ପୂର୍ବରୁ ସ୍ତ୍ରୀଙ୍କର ସ୍ୱାସ୍ଥ୍ୟରକ୍ଷା

ପାଇଁ ସେ କିଛି ନା କିଛି ଔଷଧ ଦେଇ ପାରୁ ଥିଲେ । ଅବସ୍ଥା ସେତେବେଳେ ଥିଲା ଅନ୍ୟରୂପ । ସେତେବେଳେ ସେ ଥିଲେ ନିଜ ଘରେ ଏବଂ ଏକାନ୍ନବର୍ତ୍ତୀ ପରିବାର ମଧ୍ୟରେ ଅନ୍ୟ ଦୁଇ ଭାଇଙ୍କ ସାଙ୍ଗରେ । ଗାଁ ତାଙ୍କର ନିକଟରେ ଥିବାରୁ ଗାଁ ଜମିରୁ ଚାଉଳ ମଧ୍ୟ ଆସୁଥିଲା । କିନ୍ତୁ ବଦଳି ପରେ ଘର ଭଡ଼ା ତିରିଶ ଟଙ୍କା ଦେଇ ଓ ଚାଉଳ କିଣି ଏକା ତାଙ୍କ ପକ୍ଷରେ ଖର୍ଚ୍ଚ ସମ୍ଭାଳିବା ଅସମ୍ଭବ ହୋଇ ପଡ଼ୁଛି । ତାଙ୍କର ଚିନ୍ତାଧାରା ଏହି ସମସ୍ୟାର ଖିଅ ଧରି ଆରମ୍ଭ ହୋଇଥିଲା । କିନ୍ତୁ ନିଜକୁ ନିଜେ ପ୍ରଶ୍ନ ପଚାରି ତାର ଉତ୍ତର ଦେଇ ଦେଇ ସେ ବର୍ତ୍ତମାନ ଯେଉଁଠି ପହଞ୍ଚିଛନ୍ତି ତାହା ମୂଳ ଚିନ୍ତାଠାରୁ ବହୁଦୂରେ । ପ୍ରଥମଥର ସେ କ୍ଷୋଭ, ଦୁଃଖ, ଅନ୍ୟର ସୁଖ ପ୍ରତି ଈର୍ଷା ମଧ୍ୟ ନାହିଁ, ଆଖି ତାଙ୍କର ଉଦାସ ଓ ଛଳ ଛଳ । ସେ ନିଶ୍ୱାସ ଚାପି ମନେ ମନେ କହୁଚନ୍ତି, ସେଇ ମହାନ୍ ପୁରୁଷକୁ ଜାଣିବା ଜୀବନର ଏକମାତ୍ର ଲକ୍ଷ୍ୟ ହେବା ଉଚିତ ମୁଁ ମାନୁଚି । କିନ୍ତୁ କାହିଁକି ବାରେ ବାରେ ଦୁଃଖ, ଈର୍ଷା, କ୍ରୋଧ, ହିଂସା, ଲୋଭ, କାମନା ଆସି ସେଇ ମୋହନରୂପ ସାମନାରେ ଛିଡ଼ା ହୋଇ ଦୃଷ୍ଟି ପଥରେ ବାଧା ଜନ୍ମାଉଚି ? କାହିଁକି ? କାହିଁକି ? ଛି, ଏ ଜୀବନକୁ ଧିକ୍ , କ୍ଷୁଦ୍ର କାମନା, ଅତି ଅଳ୍ପ ଆଶା, ସମସ୍ତଙ୍କୁ ନିଜର ବାହାଦୁରି ଦେଖାଇବାର ଇଚ୍ଛାହିଁ ବେଶୀ ଆକର୍ଷଣ କରି ଦେଉଚି ଈର୍ଷା, ହିଂସା ଲୋଭ ଆଡ଼େ । ଅଥଚ ବିରାଟ ନିବିଡ଼ ଆନନ୍ଦ ପଡ଼ିରହିଚି, ସେଆଡ଼େ ମନ ଟିକିଏ ବି ଯାଉନାହିଁ । କଅଣ କରିବି ମୁଁ ? କଅଣ କରିପାରେ ମୁଁ ? କିପରି ଏସବୁ ରୋଧ କରିବି ?...

ହତାଶାରେ ଦୁଇ ବିନ୍ଦୁ ଅଶ୍ରୁ ଗୋବିନ୍ଦ ବାବୁଙ୍କ ଆଖିରୁ ଗଡ଼ି ପଡ଼ିଲା । ଭଗବାନଙ୍କ ପାଇଁ ମନରେ ସେ ଏକ ଅପୂର୍ବ ବେଦନାମୟ ବ୍ୟାକୁଳତା ଅନୁଭବ କଲେ । ମନରେ ତାଙ୍କର ଆଶାର ସଞ୍ଚାର

ହେଲା । କିନ୍ତୁ ପ୍ରାଣୀଙ୍କ ମନ କହିଲା, ଏହା ବ୍ୟାକୁଳତା ମାତ୍ର । ଏ ମୋହ ଏବଂ ମୋହରୁ ଜାତ କୌଣସି ଭାବ ଉପରେ ବିଶ୍ୱାସ ରଖିବା ଉଚିତ କି ? ଗୋବିନ୍ଦ ବାବୁଙ୍କ ଆଖିପତା କୁଞ୍ଚିତ ହେଲା । ସେ ରୁଦ୍ଧଶ୍ୱାସ ଗୁଡ଼ି ପୁଣି ସଚେତନ ହୋଇ ଉଠିଲେ । ଭଗବାନଙ୍କ ବିଷୟ ଭାବୁ ଭାବୁ ଚୈତନ୍ୟଦେବଙ୍କ ଭଳି କାନ୍ଦିପାରିଥିବା ଯୋଗୁଁ ମନରେ ଯେଉଁ ଗର୍ବ ଅନୁଭବ କରୁଥିଲେ ସେ ଧୂଳିସାତ୍ ହୋଇଗଲା । ସେ ପୁଣି ଚିନ୍ତା କରିବାକୁ ଲାଗିଲେ । ନିଜର ଗର୍ବ, ମୋହ, ଈର୍ଷା, ଲୋଭ ଆଦି ଦେଖିପାରି ବୁଝିପାରି ସେ ନିଜକୁ ଘୃଣା, ତୀବ୍ର ଘୃଣା କରିବାକୁ ଲାଗିଲେ । ଆତ୍ମହତ୍ୟା କରିବାକୁ ଇଚ୍ଛା କଲେ ।

ହୃଦର ଭିତରେ ହାତ ଯୋଡ଼ି ସେ ଭଗବାନଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ, ହେ ମହାନ୍, ହେ ଦୟାନିଧି, ତୁମେ ଦୟାକର, ଏସବୁ କଣ୍ଟକ ମୋ ମନରୁ କାଢ଼ିନିଅ, ଦେଖାଅ ମୋତେ ସେଇ ଆନନ୍ଦମୟ ରୂପ । ପୃଥିବୀର ସବୁ ସୁନ୍ଦର ଦିଶୁ ମୋତେ···

···ଶୁଣ, ବୃଦ୍ଧ, ମୋହଗ୍ରସ୍ତ ହୁଅ ନାହିଁ ଏ ପ୍ରାର୍ଥନାରେ ! ଭାବ ନାହିଁ ତୁମେ ଏହି ଭାବନା ପାଇଁ ଅନ୍ୟଠାରୁ ଅନେକ ଉଚ୍ଚରେ । ଭାବିଦେଖ, ପୃଥିବୀର ସମସ୍ତ ପ୍ରାଣୀର ଭାବନା ତୁମ ଭିତରେ ସ୍ଥାନ ପାଇଛି । ଯାହାକୁ ତୁମେ ମହାନ୍‌ଚିନ୍ତା ବୋଲି ଧରି ନେଇ ନିଜ ଭିତରେ ତାର ଉଦ୍ରେକ ଦେଖି ଆନନ୍ଦିତ ହେଉଛ, ଧନ୍ୟ ମନେ କରୁଛ ଏବଂ ଯାହାକୁ ତୁମେ କୁଚିନ୍ତା ବୋଲି ଧରିନେଇ ନିଜ ଭିତରେ ତାର ଅସ୍ତିତ୍ୱ ଦେଖି ନିଜକୁ ଘୃଣା କରୁଛ ଏ ଦୁଇ ଭାବ ଜୀବନ ସହିତ ସଂଶ୍ଳିଷ୍ଟ । ଓତପ୍ରୋତ ଭାବରେ ଜଡ଼ିତ । ପ୍ରଥମ ଭାବଟି ଏକ ହେଲେ ଅନ୍ୟ ଭାବଟି ତିନି, ଏହି ପରିମାପରେ ଏମାନେ ଅଛନ୍ତି । ଶରୀର ଓ ମନର ସଂମିଶ୍ରଣର ଏ ଶରୀରକୁ ଯେତେବେଳେ

ପାଇଁ ସେ କିଛି ନା କିଛି ଔଷଧ ଦେଇ ପାରୁ ଥିଲେ । ଅବସ୍ଥା ସେତେବେଳେ ଥିଲା ଅନ୍ୟରୂପ । ସେତେବେଳେ ସେ ଥିଲେ ନିଜ ଘରେ ଏବଂ ଏକାନ୍ନବର୍ତ୍ତୀ ପରିବାର ମଧ୍ୟରେ ଅନ୍ୟ ଦୁଇ ଭାଇଙ୍କ ସାଙ୍ଗରେ । ଗାଁ ତାଙ୍କର ନିକଟରେ ଥିବାରୁ ଗାଁ ଜମିରୁ ଚାଉଳ ମଧ୍ୟ ଆସୁଥିଲା । କିନ୍ତୁ ବଦଳି ପରେ ଘର ଭଡ଼ା ତିରିଶ ଟଙ୍କା ଦେଇ ଓ ଚାଉଳ କିଣି ଏକା ତାଙ୍କ ପକ୍ଷରେ ଖର୍ଚ୍ଚ ସମ୍ଭାଳିବା ଅସମ୍ଭବ ହୋଇ ପଡ଼ୁଛି । ତାଙ୍କର ଚିନ୍ତାଧାରା ଏଇ ସମସ୍ୟାର ଖିଅ ଧରି ଆରମ୍ଭ ହୋଇଥିଲା । କିନ୍ତୁ ନିଜକୁ ନିଜେ ପ୍ରଶ୍ନ ପଚାରି ତାର ଉତ୍ତର ଦେଇ ଦେଇ ସେ ବର୍ତ୍ତମାନ ଯେଉଁଠି ପହଞ୍ଚିଛନ୍ତି ତାହା ମୂଳ ଚିନ୍ତାଠାରୁ ବହୁଦୂରରେ । ପ୍ରଥମଥର ସେ କ୍ଷୋଭ, ଦୁଃଖ, ଅନ୍ୟର ସୁଖ ପ୍ରତି ଈର୍ଷା ମଧ୍ୟ ନାହିଁ, ଆଖି ତାଙ୍କର ଉଦାସ ଓ ଛଳ ଛଳ । ସେ ନିଶ୍ୱାସ ଚାପି ମନେ ମନେ କହୁଚନ୍ତି, ସେଇ ମହାନ୍ ପୁରୁଷଙ୍କୁ ଜାଣିବା ଜୀବନର ଏକମାତ୍ର ଲକ୍ଷ୍ୟ ହେବା ଉଚିତ ମୁଁ ମାନୁଚି । କିନ୍ତୁ କାହିଁକି ବାରେ ବାରେ ଦୁଃଖ, ଈର୍ଷା, କ୍ରୋଧ, ହିଂସା, ଲୋଭ, କାମନା ଆସି ସେଇ ମୋହନରୂପ ସାମନାରେ ଛିଡ଼ା ହୋଇ ଦୃଷ୍ଟି ପଥରେ ବାଧା ଜନ୍ମାଉଚି ? କାହିଁକି ? କାହିଁକି ? ଛି, ଏ ଜୀବନକୁ ଧିକ୍, କ୍ଷୁଦ୍ର କାମନା, ଅତି ଅଳ୍ପ ଆଶା, ସମସ୍ତଙ୍କୁ ନିଜର ବାହାଦୁରି ଦେଖାଇବାର ଇଚ୍ଛା ହିଁ ବେଶୀ ଆକର୍ଷଣ କରି ଦେଉଚି ଈର୍ଷା, ହିଂସା ଲୋଭ ଆଡ଼େ । ଅଥଚ ବିରାଟ ନିବିଡ଼ ଆନନ୍ଦ ପଡ଼ିରହିଚି, ସେଆଡ଼େ ମନ ଟିକିଏ ବି ଯାଉନାହିଁ । କଅଣ କରିବି ମୁଁ ? କଅଣ କରିପାରେ ମୁଁ ? କିପରି ଏସବୁ ରୋଧ କରିବି ?...

ହତାଶାରେ ଦୁଇ ବିନ୍ଦୁ ଅଶ୍ରୁ ଗୋବିନ୍ଦ ବାବୁଙ୍କ ଆଖିରୁ ଗଡ଼ି ପଡ଼ିଲା । ଭଗବାନଙ୍କ ପାଇଁ ମନରେ ସେ ଏକ ଅପୂର୍ବ ବେଦନାମୟ ବ୍ୟାକୁଳତା ଅନୁଭବ କଲେ । ମନରେ ତାଙ୍କର ଆଶାର ସଞ୍ଚାର

ହେଲା । କିନ୍ତୁ ପ୍ରାଣିଙ୍କ ମନ କହିଲା, ଏହା ବ୍ୟାକୁଳତା ମାତ୍ର । ଏ ମୋହ ଏବଂ ମୋହରୁ ଜାତ କୌଣସି ଭାବ ଉପରେ ବିଶ୍ୱାସ ରଖିବା ଉଚିତ କି ? ଗୋବିନ୍ଦ ବାବୁଙ୍କ ଆଖିପତା କୁଞ୍ଚିତ ହେଲା । ସେ ରୁଦ୍ଧଶ୍ୱାସ ଗୁଡ଼ା ପୁଣି ସଚେତନ ହୋଇ ଉଠିଲେ । ଭଗବାନଙ୍କ ବିଷୟ ଭାବୁ ଭାବୁ ଚୈତନ୍ୟଦେବଙ୍କ ଭଳି କାନ୍ଦିପାରିଥିବା ଯୋଗୁଁ ମନରେ ଯେଉଁ ଗର୍ବ ଅନୁଭବ କରୁଥିଲେ ସେ ଧୂଳିସାତ୍ ହୋଇଗଲା । ସେ ପୁଣି ଚିନ୍ତା କରିବାକୁ ଲାଗିଲେ । ନିଜର ଗର୍ବ, ମୋହ, ଈର୍ଷା, ଲୋଭ ଆଦି ଦେଖିପାରି ବୁଝିପାରି ସେ ନିଜକୁ ଘୃଣା, ତୀବ୍ର ଘୃଣା କରିବାକୁ ଲାଗିଲେ । ଆତ୍ମହତ୍ୟା କରିବାକୁ ଇଚ୍ଛା କଲେ ।

ହୃଦର ଭିତରେ ହାତ ଯୋଡ଼ି ସେ ଭଗବାନଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ, ହେ ମହାନ୍, ହେ ଦୟାନିଧି, ତୁମେ ଦୟାକର, ଏସବୁ କଣ୍ଟକ ମୋ ମନରୁ କାଢ଼ିନିଅ, ଦେଖାଅ ମୋତେ ସେଇ ଆନନ୍ଦମୟ ରୂପ । ପୃଥିବୀର ସବୁ ସୁନ୍ଦର ବିଶ୍ୱ ମୋତେ···

···ଶୁଣ, ବୃଦ୍ଧ, ମୋହଗ୍ରସ୍ତ ହୁଅ ନାହିଁ ଏ ପ୍ରାର୍ଥନାରେ ! ଭାବ ନାହିଁ ତୁମେ ଏହି ଭାବନା ପାଇଁ ଅନ୍ୟଠାରୁ ଅନେକ ଉଚ୍ଚରେ । ଭାବିଦେଖ, ପୃଥିବୀର ସମସ୍ତ ପ୍ରାଣିର ଭାବନା ତୁମ ଭିତରେ ସ୍ଥାନ ପାଇଛି । ଯାହାକୁ ତୁମେ ମହାନ୍‌ଚିନ୍ତା ବୋଲି ଧରି ନେଇ ନିଜ ଭିତରେ ତାର ଉଦ୍ରେକ ଦେଖି ଆନନ୍ଦିତ ହେଉଛ, ଧନ୍ୟ ମନେ କରୁଛ ଏବଂ ଯାହାକୁ ତୁମେ କୁଚିନ୍ତା ବୋଲି ଧରିନେଇ ନିଜ ଭିତରେ ତାର ଅସ୍ତିତ୍ୱ ଦେଖି ନିଜକୁ ଘୃଣା କରୁଛ ଏ ଦୁଇ ଭାବ ଜୀବନ ସହିତ ସଂଶ୍ଳିଷ୍ଟ । ଓତପ୍ରୋତ ଭାବରେ ଜଡ଼ିତ । ପ୍ରଥମ ଭାବଟି ଏକ ହେଲେ ଅନ୍ୟ ଭାବଟି ତିନି, ଏହି ପରିମାପରେ ଏମାନେ ଅଛନ୍ତି । ଶରୀର ଓ ମନର ସଂମିଶ୍ରଣରେ ଏ ଶରୀରକୁ ଯେତେବେଳେ

ସ୍ୱୀକାର କରି ନେଇଛ, ଏ ଦୁଇ ଭାବକୁ ସ୍ୱୀକାର କରି ନେବାର ସାହସ ଓ ବିନମ୍ର ସଞ୍ଚୟ କର । ତୁମର ମହାନ୍ ଚିନ୍ତାରେ ତୁମେ ଯଦି ଗର୍ବିତ ବା ଆନନ୍ଦିତ ହୁଅ ଏବଂ କୁଚିନ୍ତାରେ ନିଜକୁ ଘୃଣାକର ତେବେ ଅନ୍ୟ ସମସ୍ତଙ୍କ ପ୍ରତି ତୁମେ ସେମିତି ମୋହଯୁକ୍ତ ଏବଂ ଘୃଣାକାରୀ ହେବ । ଧୀରେ ତୁମ୍ଭର ଅଜ୍ଞାତରେ ତୁମ୍ଭର ମନ ସଙ୍କୁଚିତ ହୋଇଯିବ । ସେପରି ମନର ଭଗବାନ ପ୍ରତି ବିଶ୍ୱାସ କଅଣ ? ସେ କାହୁଁ ପାଇବ ମହାନ୍‌ର, ବିରାଟର ଆସ୍ୱାଦ, ଯଦି ସେ ମନକୁ ବହିର୍ଜଗତରୁ ଟାଣି ଆଣି ନିଜ ପ୍ରତି ମୋହ ସୃଷ୍ଟି କରେ, ଘୃଣାଦ୍ୱାରି ହେଉ ବା ବାହାଦୂରି ଦେଇ ହେଉ !!

ଗୋବିନ୍ଦ ବାବୁ ପୁଣି ଗୋଟିଏ ଦୀର୍ଘ ନିଶ୍ୱାସ ତ୍ୟାଗ କରିଲେ, ଏତେ ଦିନକେ ବୁଝିଲ ଡକ୍ଟର ଯେକଲ୍ ଓ ମିଷ୍ଟର ହାଇଡ୍‌ଙ୍କର କରୁଣ କାହାଣୀ । ମନରୁ ସବୁ କୁଭାବ ଦୂର କରିବାର ଚେଷ୍ଟାରେ ଭଲ ମନ୍ଦ ମିଶି ନିୟମାନୁଯାୟୀ ସାଧାରଣ ମାନବ ଡ଼କ୍ଟର ଯେକଲ୍, ହେଲେ ନିଷ୍ଠୁରକୁର୍ମୀ ମିଷ୍ଟର ହାଇଡ୍ । ତେବେ ଯାହା ଶରୀର ସହିତ ଆସିଛି ସେ ଆଜି, ମୁଁ ସେଥିପ୍ରତି ଦୃଷ୍ଟି ଦେଇ ସେମାନଙ୍କର ପ୍ରକୋପ ବଢ଼ାଇ ଲାଭ କଅଣ ? ବରଞ୍ଚ ସେ ସବୁର ଅସ୍ତିତ୍ୱ ହେତୁରୁ ମନର ନାନା ଭାବରୁ ମୁଁ ବିଭିନ୍ନ ସତ୍ୟ ପାଇ ସେହି ମହାନ୍‌ଙ୍କ ପରିଚୟ ଯଦି ପାଏ ତେବେ ସେ ସବୁ କାମରେ ଲାଗିଲା । ତେବେ ତାହାହିଁ ହେଉ, ତାହାହିଁ ହେଉ...

...ହେ ଭଗବାନ୍, ତୁମେ ସତ୍ୟ । ଆଖିରୁ ତାଙ୍କର ପୁଣି ପାଣି ଗଡ଼ି ପଡ଼ିଲା ।

...ଉଁ ହୁଁ, ମୋହ, ମୋହ । ସାବଧାନ !

ସାମାନ୍ୟ ସୂକ୍ଷ୍ମର ଖିଅଧରି ମନ ତାଙ୍କର ଗହନ ବନ ଭିତରେ ପ୍ରବେଶ କରିଛି ତାଙ୍କ ଅଜାଣତରେ !

ଗୋବନ୍ଦ ବାବୁ ଟିକଏ ହସି ମନେ ମନେ "ହଉ ସାବଧାନ ହେଉଚ" କହି ବଛଣା ଗୁଡ ଉଠି ପଡଲେ ।

ବାପୁ ସେତେବେଳକୁ କୁକୁଡା ଅଣ୍ଡା ଫୁଟାଇବା ପ୍ରଣାଳୀ ପଡିସାରି କୁକୁଡ଼ା ଛୁଆ ଲଲନ ପାଳନ ବିଷୟରେ ପଢ଼ୁଚ ସମସ୍ତ ପଢ଼ାଟି ପ୍ରକମ୍ପିତ କରି । ବୋଉ ତାର ଶେଯ ଗୁଡ ଉଠି ଆସି ତା ପାଖରେ ମୁଣ୍ଡରେ ହାତ ଦେଇ ବସିଲେ । ବାପୁ ଆଗ୍ରହ ଭରି ବୋଉକୁ ତାର ବହି ମଲାଟ ଛବି ଦେଖାଇଲା । ଛବିଟି ସତେ ମନୋରମ ହୋଇଚି । ତିରଙ୍ଗି ଚିତ୍ର । ଗୋଲାର୍ଦ୍ଧର ଗୋଟିଏ ଚିତ୍ର । ଗୋଲାର୍ଦ୍ଧରେ ଭାରତ ଓ ଭାରତ ଉପରକୁ ଏସିଆ ଓ ଇଉରୋପର କେତେ ଅଂଶ । ଭାରତର ମାନଚିତ୍ରଟି ଗାଢ଼ର ପନ୍ଦ୍ରା ଭଳି ଝଲୁଚି । ଗୋଲାର୍ଦ୍ଧର ପଚ୍ଛପଟେ ଗୋଟିଏ ଭଦ୍ରମହିଳାର ଅଣ୍ଟା ପର୍ଯ୍ୟନ୍ତ ଚିତ୍ର, ଠିକ୍ ଯେମିତି ଗୋଲାର୍ଦ୍ଧ ପଚ୍ଛପଟୁ ଉଇଁ ଆସୁଛି । ବିମ୍ବାଧରରେ ତା'ର ଦରଫୁଟା ହସ, ଆଖିରେ ଆଶାର ଉଜ୍ଜ୍ୱଳତା । ବାଁ କାଖତଳେ ଗୋଟିଏ ଗଞ୍ଜା ସେ ଜାକି ଧରିଚି । ଗୋଟିଏ କୁକୁଡ଼ା କେରଳ ଉପରେ ଛିଡା ହୋଇଚି, ତାର ପୁଚ୍ଛଟି ଦିଲ୍ଲୀ ଉପରକୁ । ଭଦ୍ରମହିଳାଟିର ଡାହାଣ ହାତଟି ଅତି ଆଦରରେ କୁକୁଡ଼ାର ପିଠି ଉପରେ ଥୁଆ ହୋଇଚି । କୁକୁଡାଟିର ଠିକ୍ ପୁଚ୍ଛ ତଳକୁ ଗୋଟିଏ ନାଲି ଅଣ୍ଡା ଶୂନ୍ୟରେ ଏବଂ ଅନ୍ୟ ଗୋଟିଏ ଧଳା ଅଣ୍ଡା ଦିଲ୍ଲୀ ଉପରେ । ଦିଲ୍ଲୀ ଉପରେ ଥିବା ଅଣ୍ଡା ଫାଟିଯାଇଚି ଏବଂ ସେଥିରୁ ଅସଂଖ୍ୟ କୁକୁଡ଼ା ଛୁଆ ବାହାରି ଭାରତଯାକ ବ୍ୟାପି ଯାଇଚି ।

ବାପୁ ଚିତ୍ରଟି ଦେଖୁ ଦେଖୁ ଆଶ୍ଚର୍ଯ୍ୟ ଓ ଉତ୍ସାହ ଭରି କହିଲା, ଏ ମାଉସୀ, ତୁମ୍ଭେ ବୋଉ ? ମୋତେ ଅନେଇଚ ମାଉସୀ !!

ବୋଉ ତାର ଛବି ଆଡ଼କୁ ନ ଚାହିଁ ଉଦାସ ଦୃଷ୍ଟିରେ ପୂର୍ବ-ପର ଶୂନ୍ୟକୁ ଚାହିଁ କହିଲେ—ହୁଁ ... । ସେ 'ହୁଁ' ବାପୁର ପ୍ରଶ୍ନର ଉତ୍ତର କିମ୍ବା ତାଙ୍କର ମନର କୌଣସି ପ୍ରଶ୍ନର ଉତ୍ତର କିମ୍ବା କୌଣସି ଜଟିଳ ସାଂସାରିକ ଅର୍ଥନୈତିକ ସମସ୍ୟାର ସମାଧାନ-ଜ୍ଞାପକ ତାହା ବୁଝିବା ଅସମ୍ଭବ ।

ଗୋବିନ୍ଦ ବାବୁ ଉଠି ଆସି ବସିଲେ ସ୍ତ୍ରୀଙ୍କୁ ଲାଗି ଓ ଛବି ଆଡକୁ ଚାହିଁ । ଛବି ପାଇଁ ତାଙ୍କର ଆଗ୍ରହ ନାହିଁ । ସେଇ ସୂତ୍ରଧରି ସେ ତାଙ୍କର ବହୁଦିନର ଗୋଟିଏ ଆଶା ପୂରଣ କରାଇ ନେବାର ସୁଯୋଗ ପାଇ ମନେ ମନେ ଖୁସି । କଥାଟା ବାପୁ ମନ ଭିତରେ ପୂରାଇ ନେଇ ପାରିଲେ ହେଲା କିନ୍ତୁ ସେ ଚେଷ୍ଟା କରିବା ଆଗରୁ ଥରେ ସ୍ତ୍ରୀଙ୍କର ମାନସିକ ପାଗ ବାଡିନେବା ଉଚିତ । ତାଙ୍କର ଶୂନ୍ୟ, ଉଦାସ ଚାହାଣିରୁ ମାନସିକ ଉତ୍ତାପର ପରିମାପ ମିଳୁନାହିଁ, ଥର୍ମୋମିଟର ବର୍ତ୍ତମାନ କାର୍ଯ୍ୟକାରୀ ଅଛି କି ନା ସେ ବିଷୟରେ ମଧ୍ୟ ଘୋର ସନ୍ଦେହ, କାରଣ ଗୋବିନ୍ଦ ବାବୁଙ୍କର ଏତେବଡ ବାପୁଟି ଯେ ତାଙ୍କର ଶରୀରକୁ ଲାଗି ଥୁଆ ହେଲା ସେଥିରେ କୌଣସି ଶାରୀରିକ ବା ମାନସିକ ପ୍ରତିକ୍ରିୟା ଦୃଷ୍ଟ ହେଲା ନାହିଁ । ଗୋବିନ୍ଦ ବାବୁ ଆଶ୍ଚର୍ଯ୍ୟ ଭାବରେ ଥରେ ସ୍ତ୍ରୀଙ୍କ ଆଖିକୁ ସାମନାସାମନି ଚାହିଁ ଆଖି ସାମନାରେ ଆଙ୍ଗୁଳି ହଲାଇଲେ । ତଥାପି କୌଣସି ପ୍ରତିକ୍ରିୟା ନାହିଁ, ଆଖିପତା ଟିକିଏ ହଲିଲା ବି ନାହିଁ । ଆଖି ଡୋଳା ପୂର୍ବପରି ସ୍ଥିର । କେବଳ ମୁଣ୍ଡରେ ଥିବା ଡ଼ାହାଣ ହାତର କଡ଼ି ଆଙ୍ଗୁଳିଟି ଟିକିଏ ହଲିଲା । ଗୋବିନ୍ଦ ବାବୁ ଭାବିଲେ, ସେତିକି ଢେର୍ । କାଲି ଠାରୁ କାଲି ମା ଜାଣେ !

ବାପୁର ପିଠି ଆଉଁସି ଦେଇ ଦେଇ କହିଲେ, କଅଣ ପଢ଼ିଲୁ କି ରେ ? ଏ ଛବିଟି କଅଣ କି ରେ ?

ବାପୁ ସିଧାସଳଖ କହିଲା, ବାପା, କୁକୁଡ଼ା କଣିଦଅ ମୁଁ ରଖିବି । ମାଉସୀ ମୋତେ କହିଲା କୁକୁଡ଼ା ରଖିବାକୁ ।

ମାଉସୀ କେତେବେଳେ କହିଲା ?

ଏଇଛୁଟିକା ପରା ।

ମାଉସୀ କାହିଁ ?

ଏଇପରା, ବାପୁ ଛବିକୁ ଚାହିଁ କହିଲା । ତା'ପରେ ଜିଦ୍ ଲଗାଇ କହିଲା, ହଁ ରଖିବି, ଟୁପ ଘରେ କାଲି କୁକୁଡ଼ା କଣିଛନ୍ତି ଦୁଇଟା । ମୋତେ ଆଜ କଣିଦଅ ।

ଗୋବିନ୍ଦ ବାବୁଙ୍କୁ ଆଉ ପରିଶ୍ରମ କରିବାକୁ ପଡ଼ିଲା ନାହିଁ କିଛି । ବାପୁ ମନରେ ତେବେ ଆଗରୁ କ୍ଷେତ୍ର ପ୍ରସ୍ତୁତ ଅଛି । ବୀଜ ପଡ଼ିବା ସାଥେସାଥ୍ ଗଛ । ଗୋବିନ୍ଦ ବାବୁଙ୍କ ଅନେକ ଦିନର ଆଶା, ଆକାଂକ୍ଷା ସେ କୁକୁଡ଼ା ରଖିବେ । ମନେ ମନେ କେତେ କଳ୍ପନା କରିଛନ୍ତି···ଅଣ୍ଡାର ପୋଚ୍, ଆମ୍ଲେଟ୍, ତରକାରି ଖାଇଛନ୍ତି, ତାଙ୍କର ଅନେକ କୁକୁଡ଼ା ହୋଇଛି । ଦିନେ ଦିନେ ରବିବାରରେ ସେଥିରୁ ଗୋଟିଏ ମାରି ରୋଷ୍ଟ କରି ମୁସଲିମ କରି ଖାଉଛନ୍ତି, ଆକାଂକ୍ଷା ପୂରଣ କରିବାର ସମର୍ଥନ ଥିଲେ ବୋଧହୁଏ କଳ୍ପନା ଶକ୍ତି ପ୍ରଖର ହୋଇଯାଏ ।

କିନ୍ତୁ ଯେତେ ସୁଯୋଗ ସୁବିଧା ଉଣ୍ଡି ସୂଚାଇଲେ ବି ସ୍ତ୍ରୀଙ୍କର ମାନସିକ ଉତ୍ତାପ ସାଙ୍ଗେ ସାଙ୍ଗେ ବଢ଼ିଯାଏ ଚରମକୁ । ନାକଟେକି ଫାଁଏ କରି ସେ କୁହନ୍ତି, ପଠାଣ ଘର କରିବାକୁ ଚାହଁ ତମେ ! ଏ ଘରେ କୁଳଦେବତା ଲକ୍ଷ୍ମୀ ନାରାୟଣଙ୍କର ପୂଜା ନଇତ ହୁଏ ମନେରଖ ।

ଗୋବିନ୍ଦ ବାବୁ ଚୈତନ୍ୟଦେବଙ୍କ ଠାଣିରେ ଡାହାଣ ହାତ ପାପୁଲି ଟେକି ମୁଣ୍ଡ ଟୁଙ୍ଗାରି ବୁଝାଇବାକୁ ପାଟି ମେଲି କରିବା

ମାନବକେ ସ୍ତ୍ରୀ ତାଙ୍କର ରଣରଙ୍ଗିଣୀ ମୂର୍ତ୍ତିରେ କହନ୍ତ ଉଠନ୍ତ, ମୁଁ ଜୀଇଁଥିଲା ଯାଏ ତା କଦାପି କରାଇ ଦେବ ନାହିଁ, ଦେବ ନାହିଁ, ଦେବ ନାହିଁ । ତିନିବାର ସତ୍ୟ କଲ ।

ଏହା ପରେ ଗୋବିନ୍ଦ ବାବୁଙ୍କର ହତାଶ ଗୃହାଣୀସହ ଦୀର୍ଘ-ନିଶ୍ୱାସ ପାତନ ଓ ସଦର୍ପେ ଗୃହତ୍ୟାଗ। ଏ ଏକାଙ୍କିକା ଅନେକବାର ଅଭିମାତ ହୋଇ ଯାଇଚ ।

ଆଜ କିନ୍ତୁ ଗୋବିନ୍ଦ ବାବୁଙ୍କର ସବୁ କଳ୍ପନା ଫଳବତୀ ହେବାର ସବୁ ଲକ୍ଷଣ ଦେଖାଦେଉଚ, କାରଣ ବାପୁ ଥରେ ଜିଦ୍ ଧଇଲେ ବାସ୍, ହରି ବ୍ରହ୍ମା ତ ଗୁଡ଼, କିବା ଘୁର ସେମାନେ ! ବାପୁବୋଉ ବି ବାପୁକୁ ଟଳାଇ ପାରିବେ ନାହିଁ । ମନେ ମନେ ହେଉଣ୍ଟାଏ ଗୋବିନ୍ଦ ବାବୁ ମାରିଦେଲେ ଓ କହିଲେ, ଭଗବାନ୍ ତୁମେ ଅଛ, ନିଶ୍ଚୟ ଅଛ । ମୋର ତାର୍କିକ ମନ ଯେତେ ମନାକରୁ ତମର ଅସ୍ତିତ୍ୱକୁ ! ଆପାତ ଦୃଷ୍ଟିରେ ଅସାମଞ୍ଜସ୍ୟ ସାମାନ୍ୟ ସାମାନ୍ୟ କଥାକୁ କାର୍ଯ୍ୟକାରଣ ସମ୍ବନ୍ଧରେ ଗୁନ୍ଥି କି ସୁନ୍ଦର ଭାବରେ ମୋର ଇଚ୍ଛା ପୂରଣ କରୁଚ ତମେ !! ବାପୁର ଛବି ବହି କିଣିବାର ଜିଦ୍ ଓ ମୋର କୌଣସି ଉଦ୍ଦେଶ୍ୟ ନ ରଖି, ନିଛକ ଛବି ବହି ହିସାବରେ, 'କୁକୁଡ଼ା ବୃକ୍ଷ' ବହିଟା ଆଣିଦବାକୁ ଯୋଗି ଦେଇ ଆଜ ସକାଳୁ ମୋର ଇଚ୍ଛା ପୂରଣର ସୁନ୍ଦର ପରିସ୍ଥିତି ସୃଷ୍ଟି କରୁଚ ତୁମେ !!!

ଚୁପ, ବାପୁ ବୋଉ ଗର୍ଜି ଉଠିଲେ ।

ଗୋବିନ୍ଦ ବାବୁ ହଠାତ୍ ବୁଝି ପାରିଲେ ନାହିଁ, ଗର୍ଜନ କାହା ଉପରେ । ଚମକି ପଡ଼ିଲେ । କିନ୍ତୁ ନା, ବାପୁଆଡ଼େ ଚଗଟି ଝୁହିଁଛନ୍ତି ସେ ।

କିନ୍ତୁ ବାପୁ ଙ୍କ ସେଥିରେ ଡରିଯିବା ମଣିଷ । ବୀର ପୁରୁଷର ପୁଅ ସେ ହେଁ···ହେଁ···। ଗୋବିନ୍ଦ ବାବୁ ମନେ ମନେ ବାପୁଙ୍କୁ ଉତ୍ସାହିତ କଲେ, ସ୍ପାଉଟ୍‌ନା ବାପୁ, ହୁଁ, ଚାଲ୍ ଜିଦ୍ ।

ବାପୁ ବୋଉକୁ ଶକତ ଠେଲାଟାଏ ମାରିଦେଇ ଉଠିଗଲା । ଗୋବିନ୍ଦ ବାବୁ ହତାଶ ହେଲେ···ହ୍ୟାପ, ଶିଆଳଛୁଆ କେବେ ସିଂହ ହେଲାଣି !

ହେଇଚ । ଏଇ ଯେ ବାପୁ ପ୍ରବେଶ କରୁଚି ଗୋଟିଏ କୁକୁଡ଼ାକୁ ଦଉଡ଼ିରେ ଟାଣି ଟାଣି ।

ଗୋବିନ୍ଦ ବାବୁ ଓ ତାଙ୍କ ସ୍ତ୍ରୀ ପରସ୍ପର ଦ୍ୱନ୍ଦ୍ୱ ଭୁଲିଯାଇ ଆଶ୍ଚର୍ଯ୍ୟ ଭାବରେ ସିମ୍ଫୁଣ୍ଡେ ସ୍ୱହ୍ନିଁ ସମସ୍ୱରେ ପଚାରିଲେ, କିରେ ଏଟା କଉଁଠୁ ଆଣିଲୁ !

ମାଉସୀ ଦେଲା । କାଲି କହିଥିଲା ଆଜି ଦବାକୁ । ବୁଝେଁ ବୁଝିଲେ ବାପୁ ଟୁପବୋଉକୁ କାଲି କହି କୁକୁଡ଼ାଟି ବାଗେଇଚି । ଟୁପୁବୋଉ ଥିଲାଘର ଝିଅ, ଥିଲାଘର ବୋହୂ । ବାପୁବୋଉର ଆଖି ଦପ କରି ଜଳି ଉଠିଲା । ସେ ଗର୍ଜି ଉଠି କହିଲେ, ଏ ଟୋକା ସବୁଠି ମୋ ମୁଣ୍ଡତଳକୁ କରିଦବ । ଦେ ଫେରାଇ ଦେଇଆ ତାକୁ ।

ବାପୁ ହସି ହସି ତାକୁ ଧରି ଛିଡ଼ା ହୋଇଚି ବୋଉର କଥାକୁ ଖାତିର ନ କରି । କୁକୁଡ଼ାଟି କାହାରି ପ୍ରତି ଭ୍ରୂକ୍ଷେପ ନ କରି ସେଇ ବନ୍ଧା ଅବସ୍ଥାରେ ମୁଡ଼ି ଖୁମ୍ପି ଖାଇସାରି ଜିନାଟି ଖାଇବା ଯୋଗ୍ୟ କି ନୁହଁ ପରୀକ୍ଷା କରୁଚି । ବାପୁବୋଉ ଠାଏକିନା ଏକ ଗୃପୁଡ଼ା ମାରି ବାପୁ ହାତରୁ ଦୌଡ଼ିଟି ଛଡ଼ାଇ ଦେଲେ । ବାପୁ ପ୍ରଥମେ " କାନ୍ଦି ଗଡ଼ିଗଲା, ତା ପରେ ଉଠି ଲୋଟା, ବାଲଟି ସବୁ ଅଗଣାକୁ ଫୋପାଡ଼ିବାକୁ ଲାଗିଲା କିନ୍ତୁ ସେ ସବୁ ପ୍ରତି ଭ୍ରୂକ୍ଷେପ ନ କରି ବାପୁବୋଉ ଯେତେବେଳେ କୁକୁଡ଼ାଟି ଟାଣି ଟାଣି ଫେରାଇ ଦବାକୁ

ଗ୍ଭଲିଲେ ବାପୁ ଅନ୍ୟ ପନ୍ଥା ଧରିଲା । ବୋଉର ପାଦ ଦୁଇଟି ଜାପୋଡ଼ି ଧରି କରୁଣ ଭାବରେ ଗ୍ଭହିଁଲା ।

ବାପୁବୋଉ ହସି ପକାଇ କହିଲେ, ହଉ ଯା ରଖ । ବାପୁ ଆନନ୍ଦରେ ନାଚି ନାଚି ଗ୍ଭଲିଗଲା କୁକୁଡ଼ାକୁ ବାନ୍ଧିବାକୁ । ବାପୁ-ବୋଉ ଚୈପବୋଉ ଘରକୁ ଗଲେ ବାପୁର ଆଚରଣ ପାଇଁ କ୍ଷମା ମାଗି କୁକୁଡ଼ାର ଦାମ ଦେଇଦବାକୁ ।

ଏହାପରେ କୁକୁଡ଼ାର ଗୋଟିଏ ସାନ ଘର ହୋଇଚି । ତା ପାଇଁ ଧାନ କିଣା ହୋଇଚି । ତାକୁ ଏକା ଲାଗୁଚି ବୋଲି ଆଉ ଗୋଟିଏ କୁକୁଡ଼ା କିଣା ହୋଇଚି ।

କିନ୍ତୁ ଅଣ୍ଡା କାହିଁ ! ମାସେ ହୋଇଗଲା ଅଣ୍ଡା କାହିଁ !! ଗୋବିନ୍ଦ ବାବୁ ଦିନେ ରାଗିଯାଇ କୁକୁଡ଼ାର ଚରିତ୍ର ବିଷୟରେ ତୀବ୍ର ମନ୍ତବ୍ୟ କଲେ, କୁକୁଡ଼ା କୁଳରେ ଏ ଦୁଇଟା ସଇତାନ ଆସିଲେ କ୍ୟାପ ଆମ ଘରକୁ ।

କିନ୍ତୁ ନା, କୁକୁଡ଼ାମାନଙ୍କ ଦୋଷ ନୁହେଁ ଏକଥା ଦିନେ ବୁଝି ପାରିଲେ ସେ । ବାପୁ ଯେ ତାଙ୍କୁ ଗୋଡ଼େ ଗୋଡ଼େ ଜଗିଛୁ ! ଗଞ୍ଜା ଗୋଡ଼ାଇବା ମାତ୍ରକେ ବାପୁ ତାକୁ ଠେକା ମାରି ଘଉଡ଼ାଇ ଦେଉଚି !! ତା ମନରେ ମାଈଜୀ ଗଞ୍ଜା ତା କୁକୁଡ଼ାକୁ କାମୁଡ଼ି ଗୋଡ଼ାଇଚି । ଏଥିକୁ ଉପାୟ !! ବାପୁକୁ ଏ ବିଷୟରେ କିଏ ବୁଝାଇବ, କେମିତି ବୁଝାଇବ ! ବାପୁ ବୁଝିଲେ ତ !!

ଗୋବିନ୍ଦ ହତାଶରେ ହସ ହସି ସ୍ତ୍ରୀଙ୍କୁ କହିଲେ । ବାପୁବୋଉ ମୁରୁକି ହସି କହିଲେ, ଠିକ୍ ହୋଇଚି, ଅଣ୍ଡାଖିଆ ବାହାରିଗଲା ଏଥର । ତାପରେ ଗମ୍ଭୀର ହୋଇ କହିଲେ, "ଭଲ ହୋଇଚି, ଦିନରାତି ଘରେ ପିଣ୍ଡାରେ ହଗୁଛନ୍ତି, ଧୋଇ ଧୋଇ ମୁଁ ହଇରାଣ ହେଲିଣି ।

ଏହି ସମୟରେ ଗୋଟିଏ ଗଞ୍ଜା ବାପୁର କୁକୁଡ଼ାକୁ ଗୋଡେଇ ଗୋଡ଼େଇ ଧାଇଁ ଆସିଲା ଘର ଭିତରକୁ । ବାପୁ ଗୋଡ଼େଇଚି ଗଞ୍ଜା ପଛରେ ଠେଙ୍ଗା ମାରୁ ମାରୁ । ଗଞ୍ଜାର ସେଥିପ୍ରତି ଭ୍ରୂକ୍ଷେପ ନାହିଁ । ବାପୁବୋଉ ବାପୁକୁ କୋଳକୁ ଟେକିନେଲେ ବାଟରୁ । ବାପୁ ବୋଉ କୋଳରେ ଗୁଟିପିଟି ହୋଇ କହିଲା, ଗୁଆଡେ ମୋତେ, ମୋ କୁକୁଡ଼ାକୁ କାମୁଡ଼ଦବ ସେଠା ।

ବାପୁବୋଉ କହିଲେ, ଆରେ ଶୁଉଣୁ । ସେ ବଡ଼ କୁକୁଡ଼ା ଦେହରେ ଅନେକ ଛୁଆକୁକୁଡ଼ାର ପୋକ ଅଛି । ସେ କାମୁଡ଼ ତୋ କୁକୁଡ଼ା ଧଇଲେ...ଏଁ...ଏଁ ବୁଝିଲୁ (ଅପାଙ୍ଗରେ ଗୋବିନ୍ଦ ବାବୁଙ୍କ ଆଡେ ଟିକିଏ ଚାହିଁ) ବୁଝିଲୁ ତୋ କୁକୁଡ଼ା ଦେହକୁ ସେ ପୋକରୁ କଛି ଚାଲିଯିବେ । ତୋ କୁକୁଡ଼ା ସେଇଠୁ ନଇଛି ଗୋଟାଏ ଅଣ୍ଡା ଦବ, ଆଉ ସେ ଅଣ୍ଡାସବୁରୁ କେତେ କୁନିଛୁଆ ହେବେ ।

ବାପୁ ଗୁଟିପିଟି ହବା ବନ୍ଦକରି କାନ ଡେରି ଶୁଣିଲା । କୋଳରୁ ଓହ୍ଲାଇ କୁକୁଡ଼ା ଆଡେ ଚାହିଁଲା । ସେତେବେଳକୁ ଗଞ୍ଜା ଚାଲି-ଗଲାଣି ତାର ନିୟମ ପାଳି ।

ବାପୁ ଯେତେବେଳେ ଦେଖିଲା ସତକୁ ସତ ଏହାର କଛିଦନ ପରେ ତାର କୁକୁଡ଼ା ଅଣ୍ଡା ଦେଲା । ଭାରି ଖୁସି ହୋଇ ସେ ବୋଉକୁ ଦେଖାଇଲା । ଏହାପରେ ସେ ଗଞ୍ଜାକୁ ଆଉ ବାଧା ଦେଲା ନାହିଁ ।

ଗୋବିନ୍ଦ ବାବୁଙ୍କର ବର୍ତ୍ତମାନ ଅନେକ ଗୁଡ଼ିଏ କୁକୁଡ଼ା । ପ୍ରତିଦିନ ଅଣ୍ଡା ମଧ୍ୟ ହୁଏ ଚାରିଟାରୁ କମ ନୁହେ । ଗୋବିନ୍ଦ ବାବୁ ଆନନ୍ଦରେ ଆମଲେଟ୍ ପୋଚ ଖାଉଛନ୍ତି । କିନ୍ତୁ କୁକୁଡ଼ା ରୋଷ୍ଟ ବା ତରକାରି ଖାଇପାରି ନାହାନ୍ତି । ବାପୁବୋଉର ସେଥିରେ ଘୋର ଆପତ୍ତି, ଯାହାକୁ ପାଳିଚି ମୁଁ ତାକୁ ମାରିବି ନା ! ରାକ୍ଷସୀ ହେବି ନା !!

ଗୋବିନ୍ଦ ବାବୁଙ୍କର କିନ୍ତୁ ରାକ୍ଷସ ଭାବ ଗଲାନାହିଁ । ବାପୁବୋଉ ଦିନକୁ ଦିନ ଉତ୍‌କ୍ଷିପ୍ତ ହୋଇ ଉଠୁଚନ୍ତି । ଘର ପିଣ୍ଡା ଧୋଇ ଧୋଇ ସେ ସତେ ହଇରାଣ । ବାପୁର ଆଉ କୁକୁଡ଼ା ପ୍ରତି ଢେରେ ନଜର ନାହିଁ । ଏହି ସୁବିଧା ନେଇ ସେ ଦିନେ ସ୍ଥିର କଲେ ଯେ ପଡ଼ିଶା ଘରକୁ ସବୁ କୁକୁଡ଼ାକୁ ଦେଇଦେବେ ।

ଦିନେ ସକାଳୁ ବର୍ଷା ଅବିରାମ ପଡ଼ୁଚି । ପଡ଼ିଶାଘର ଷ୍ଟକର ଆସିଚି କୁକୁଡ଼ାଗୁଡ଼ିକ ନେଇ ଯିବାକୁ । ବାପୁବୋଉ ବୋଷେଇ ଶାଳରୁ ବାହାରି ଆସିଲେ କୁକୁଡ଼ା ଘରକୁ ଯିବାକୁ ଦେଖିବା ପାଇଁ, ସେମାନେ ଅଛନ୍ତି କି ନା । ଗୋବିନ୍ଦ ବାବୁ ଖଟ ଉପରେ ଶୋଇ ଭାବୁଛନ୍ତି କପରି ସ୍ତ୍ରୀଙ୍କୁ ବାଧାଦେବେ । ବାପୁବୋଉ ପାଦ ଟିପି ଟିପି ଆସି ଗୋବିନ୍ଦ ବାବୁଙ୍କୁ ହାତ ଠାରି ଡ଼ାକି ଚୁପ୍ ଚୁପ୍ କହିଲେ, ଦେଖିବ ଆସ । ମୁହଁରେ ତାଙ୍କର ଏକ ଉଜ୍ଜ୍ୱଳ ଆଭା ଦେଖି ଗୋବିନ୍ଦ ବାବୁ ଆଶ୍ଚର୍ଯ୍ୟ ହୋଇଗଲେ ।

ଗୋବିନ୍ଦ ବାବୁ ବ୍ୟାପାର କଅଣ ବୁଝି ନ ଥିଲେ ମଧ୍ୟ ସ୍ତ୍ରୀଙ୍କ ପରି ପାଦ ଟିପି ଟିପି ସ୍ତ୍ରୀଙ୍କ ଅନୁଗମନ କଲେ । କୁକୁଡ଼ା ଘର ପାଖରେ ଦେଖିଲେ ଗୋଟିଏ କୁକୁଡ଼ାଛୁଆ ମୁଣ୍ଡ ତଳକୁ ପୋତି ଛିଡ଼ା ହୋଇଚି । ଆଉ ଗୋଟିଏ ବଡ଼ କୁକୁଡ଼ା କାଠଗଦା ଉପରେ ବସିଚି ଆଉ ଛନ ଛନ ହୋଇ ଚାରିଆଡ଼କୁ ଚାହୁଁଚି । କଅଣ ଦେଖିବାର ଅଛି ଗୋବିନ୍ଦ ବାବୁ ବୁଝିପାରିଲେ ନାହିଁ ।

ବାପୁ ବୋଉ କହିଲେ, ଆହା, ଦେଖି ପାରିଲ ନାହିଁ । କୁକୁଡ଼ାଙ୍କର ଏମିତି ଭାବ ଅଛି କି ? ଏଇ କୁକୁଡ଼ାର ମା ବର୍ଷାରୁ ଆସି ଏଇଠି ପିଣ୍ଡାରେ ଛିଡ଼ା ହେଲା ଆଉ କକ୍‌କରକ-ଆ···କରି ଡ଼ାକିଲା । ଏଇ ସାନ ଛୁଆଟି ବର୍ଷାରୁ ଭିଜି ଭିଜି ଆସି ତା ପାଖରେ ଛିଡ଼ା ହେଲା । ଦୁହେଁ ଦୁହିଁଙ୍କୁ ଚାହିଁ ମୁହଁକୁ ମୁହଁ ଲଗାଇ ଅନେକ-

କ୍ଷଣ ଛୁଟା ହେଲେ । କଅଣ କଥାବାର୍ତ୍ତା ହେଲାପରି ଲାଗିଲା । ଜଣେ ମା ତାର ଛୁଆକୁ ଗାଳି ଦେଲା, କାହିଁକି ବର୍ଷାରେ ଭିଜୁଚୁ ବୋଲି । ତା ପରେ ଛୁଆ କଅଣ କହିଲା କେଜାଣି ମା ତାକୁ ବି ଗୁଡ଼ି ଖୁମ୍ପା ଦେଇ ମୁହଁ ଘୁଞ୍ଚି ଗୁଲିଗଲା । ଛୁଆଟି ସେତିକିବେଳକୁ ମୁହଁ ତଳକୁ କରି ଛୁଟା ହୋଇଛି ସେଠି, ଆଉ ବରଷାକୁ ଯାଉନାହିଁ । କି ସୁନ୍ଦର ମ ସତେ ! ତାଙ୍କର ମା ମାନେ ବି ଛୁଆକୁ ଏମିତି ପାଳନ୍ତି ! ନାଇଲେ ମା, ମୋ କୁକୁଡ଼ା ମୁଁ କାହାକୁ ଦେବି ନାହିଁ । କହୁ କହୁ ତାଙ୍କର ଆଖି ଛଳ ଛଳ ହୋଇଗଲା ।

ଗୋବିନ୍ଦ ବାବୁ ବଡ଼ କୁକୁଡ଼ା ଆଡ଼େ ଗୁହିଁ କହିଲେ, ଆଉ ଏ କାହିଁକି ଏଠି ବସିଛି ।

—ଅଣ୍ଡା ଦେବ ଯେ, ଏଇ ଛୁଣିକା ଗୁରିଆଡ଼ ପାଟିକରି କମ୍ପାଉ-ଥିଲା ସେ । ସତେ ଯେମିତି କହୁଥିଲା, ଅଣ୍ଡା ଦବା ଜାଗା ଦେଖେଇ ଦିଅ ମୋତେ । ଯେମିତି ଅଣ୍ଡା ଦେଇ ସାରିବ ସେଇଠୁ ପୁଣି ପାଟି କରି କମ୍ପେଇ କହିବ, ଅଣ୍ଡା ଦେଇ ସାରିଲି, ଅଣ୍ଡା ନେଇ ଯା ଖାଇବ ! କି ଆଶ୍ଚର୍ଯ୍ୟ ସତେ ।

ଗୋବିନ୍ଦ ବାବୁଙ୍କ ଆଖି ବି ଛଳ ଛଳ ହୋଇଗଲା । ସେ କହିଲେ, ସତେ କି ଅଦ୍ଭୁତ ସୃଷ୍ଟି ଏମାନେ । ସକାଳୁ ଉଠିଲେ, ଗୁଲିଗଲେ ବାହାରକୁ ଖାଦ୍ୟ ଖୋଜିବା ପାଇଁ । ଦିନଯାକ ବାହାରେ ଖାଇ ସନ୍ଧ୍ୟାବେଳକୁ ଘରକୁ ଆସିଲେ, ଉଡ଼ିଲେ । ରଖିବା ପାଇଁ ପଇସାଟିଏ ବି ଖର୍ଚ୍ଚ ନାହିଁ । ସବୁଠୁ ପୁଷ୍ଟିକର ଖାଦ୍ୟ ଏମାନେ ଯୋଗାଉଛନ୍ତି କିନ୍ତୁ ଅଣ୍ଡା ଦେଲା ପରେ ତାକୁ କିଏ ନେଲା କି ଖାଇଲା ସେଥିପ୍ରତି ତାଙ୍କର ଭ୍ରୂକ୍ଷେପ ନାହିଁ । ଯଦି ଥାଆନ୍ତା ତେବେ ଆମ ପକ୍ଷରେ କେତେ ଅସୁବିଧା ହୁଅନ୍ତା କୁହତ ।

ପୁଣି ଦେଖ ସବୁଠାରୁ ବଳକାରକ ଖାଦ୍ୟ ଯୋଗାଉ ଥିଲେ ବି ଏମାନେ କେତେ ଘାରୁ !!

—ଅଦ୍ଭୂତ ସତେ ! ଠିକ୍ ରାତି ତିନଟା ବେଳେ ବ୍ରାହ୍ମ-ମୁହୂର୍ତ୍ତରେ ସବୁ କୁକୁଡ଼ାଯାକ ଡ଼ାକି ଉଠିବେ, ଚକ୍ରଧ···ଅ ···ର, ରକ୍ଷା କ···ଅ···ର !

ଗୋବିନ୍ଦ ବାବୁ ଛଳ ଛଳ ଆଖିରେ ଫେରି ଆସି ଖଟ ଉପରେ ଶୋଇ ଭାବିବାକୁ ଲାଗିଲେ ସୃଷ୍ଟିର ଅଦ୍ଭୂତ ନିୟମ । କିଛି ଥିର କଳନା ପାଇଲେ ନାହିଁ । ଉପନିଷତ୍ରର ଗୋଟିଏ ଶ୍ଳୋକ ତାଙ୍କର ମନେ ପଡ଼ିଲା, ଯସ୍ୟାମତଂ ତସ୍ୟ ମତଂ ମତଂ ଯସ୍ୟ ନ ବେଦ ସଃ, ଅବିଜ୍ଞାତଂ ବିଜାନତାଂ ବିଜ୍ଞାତମବିଜାନତାମ୍ । ଯେଉଁମାନେ ସମ୍ୟକ୍ ଜ୍ଞାନବାନ୍ ସେମାନେ ବ୍ରହ୍ମଙ୍କୁ ଜ୍ଞାତ ବୋଲି ମନେ କରନ୍ତି ନାହିଁ, ଯେଉଁମାନେ ସମଗ୍‌ଜ୍ଞାନବାନ୍ ନୁହନ୍ତି ସେମାନେ ମନେ କରନ୍ତି ବ୍ରହ୍ମଜ୍ଞାତ ।

ସେଦିନ ରାତି ନ ପାହୁଣୁ ଗୋବିନ୍ଦ ବାବୁଙ୍କ ନିଦ ଭାଙ୍ଗିଗଲା । ତାଙ୍କର ଶୋଇବା ଘର ଦୁଆର ପାଖରେ କୁକୁଡ଼ାମାନଙ୍କର ଐକ୍ୟତାନରେ ପ୍ରତିଦିନ ଏପରି ଶୁଅନ୍ତି । କିନ୍ତୁ ଆଜି ତା'ର ଭାଷା ସେ ସ୍ପଷ୍ଟ ବୁଝି ପାରିଲେ, ବାପୁବୋଉଙ୍କୁ ଆସ୍ତେ ହଲାଇ ଉଠାଇ ଦେଇ କହିଲେ, ଶୁଣୁଚ, କୁକୁଡ଼ାମାନେ କହୁଚନ୍ତି, ବାଡ଼ି କବାଟ ଫିଟାଇ ଦିଅ, ଆମେ ବାହାରକୁ ଯିବୁ ନିଜ ନିଜ ଧନ୍ଦାରେ ।

ବାପୁବୋଉ କାନରେ କହିଲେ, ସତେ ମ !!

ଦୁହେଁ କବାଟ ଫିଟାଇ ବାହାରକୁ ଆସି ଗଲେ ବାଡ଼ି କବାଟ ଫିଟାଇ ଦେବାକୁ । କୁକୁଡ଼ାଗୁଡ଼ିକ ସେମାନଙ୍କ ପଛେ ପଛେ ଦୌଡ଼ିଲେ । ଯେମିତି ବାଡ଼ି କବାଟ ଫିଟା ହୋଇଚି ଗିଡ଼ିଗିଡ଼ା ମାରି ସମସ୍ତେ ଦୌଡ଼ିଗଲେ ବାହାରକୁ ।

ଗୋବିନ୍ଦ ବାବୁ ବାପୁବୋଉ ମୁଗ୍ଧ ଭାବରେ ଅନାଇ ରହିଲେ ସେମାନଙ୍କୁ ।

ବାପୁ ବୋଉ ଆକାଶକୁ ଚାହିଁ ନମସ୍କାର କରି କହିଲେ ହେ ଭଗବାନ୍...

ଗୋବିନ୍ଦ ବାବୁ କହିଲେ, "ଭଗବାନଙ୍କ ପାଇଁ ଆକାଶକୁ ଚାହୁଁଛ କାହିଁକି ? ଘାସକୁ ଚାହଁ, କୁକୁଡ଼ାକୁ ଚାହିଁ, ମୋର ମନେ ହେଉଛି ବାପୁ ବୋଉ, ମଣିଷର ଆର୍ଥିକ ସାମର୍ଥ୍ୟ ମନୁଷ୍ୟର ମନକୁ ଦୁର୍ବଳ କରି ପକାଏ । ମନର ଶକ୍ତି ବା ପରିସର ବଢ଼ିବାର ସୁଯୋଗ ପାଏ ନାହିଁ । ପଇସା ଥିଲେ ଟିକିଏ ଦେହ ଖରାପ ହେଲେ ଡ଼ାକ ଆଣ ଡାକ୍ତର, କିଣିଦିଅ ଥୋଡ଼ାଏ ଔଷଧ ଅଥଚ ବୋଧହୁଏ ମନକୁ ଟିକିଏ ଶାନ୍ତ କଲେ, ଟିକିଏ ଜୋର ଦେଲେ ରୋଗର ଉପଶମ ହୁଅନ୍ତା...ଏ କଷ୍ଟ ମନର ପରିସର ଅନେକ ବଢ଼ାଇ ଦେଇ ନାହିଁ କି ? ପଇସା ଥିଲେ ଏ ଅଣ୍ଡା କିଣି ଆଣି ଆମେ ଖାଇ ଥାଆନ୍ତୁ । କିନ୍ତୁ ମନର ପରିସର ବଢନ୍ତା କି ସେଥିରେ.....?

ପୂର୍ବ ଗଗନରେ ସେତେବେଳକୁ ସୁନ୍ଦରୀ ଫାଟିଲାଣି ।



# ଅପରାଧୀ

ଶ୍ରୀ ଦଣ୍ଡଧାରୀ ମହାପାତ୍ର, ଏମ୍. ଏ., ବି. ଏଲ୍. ପ୍ରଥମ ଶ୍ରେଣୀ ମାଜିଷ୍ଟ୍ରେଟ ବାହାରିଚନ୍ତି ତାଙ୍କର ବିଚାରାଳୟକୁ । ସୁନ୍ଦର ସରକାରୀ ଘର । ସାମନାରେ ଫୁଲ ବଗିଚା । ପୋର୍ଟିକୋରେ ମଟର ରହିଚି ଓ ବେହେରା ତାକୁ ଯତ୍ନ ସହକାରେ ପୋଛୁଚି । ଗୌରକାନ୍ତି; ସୁଦୀର୍ଘ, ସୁନ୍ଦର ଦେଖିବାକୁ ମହାପାତ୍ର ସାହେବ । ଚାଲିଲାବେଳେ ସେ ଶରୀରର ଉପରିଅର୍ଦ୍ଧ ଟିକିଏ ଝୁଙ୍କାଇ ଗମ୍ଭୀର ଭାବରେ ଚାଲନ୍ତି ମୁହଁରେ ପାଇପ ଗୁଞ୍ଜି । ଭାରି ସୁନ୍ଦର ଦିଶେ ତାଙ୍କୁ ଏପରି ଠାଣିରେ ଚାଲିବାବେଳେ । ବିବାହ କରିଚନ୍ତି ମଧ୍ୟ ସୁଶିକ୍ଷିତା, ସର୍ବାଙ୍ଗସୁନ୍ଦରୀ ଧନୀ କନ୍ୟା ସୁଷମା ଦେବୀଙ୍କୁ । ଛାତ୍ରାବସ୍ଥାରେ ସେ କଠୋର ପରିଶ୍ରମୀ ଥିଲେ । ଦରିଦ୍ର ଗୃହରେ ଜନ୍ମ ହୋଇଥିଲେ ମଧ୍ୟ ପିଲାଟିବେଳୁ ତାଙ୍କର ଉଚ୍ଚ ଆକାଂକ୍ଷା ଥିଲା ବଡ ହେବେ । ତାଙ୍କର ଆଶା ଫଳବତୀ ହୋଇଚି । କିନ୍ତୁ ସାଫଲ୍ୟ ସହିତ ଶିଥିଳତା ଆସି ନାହିଁ । ନିଜର ପରିଶ୍ରମ ଯୋଗୁଁ ଅଳ୍ପଦିନ ମଧ୍ୟରେ ବିଚାରରେ ସୁନାମ ଅର୍ଜନ କରିଚନ୍ତି ।

ପ୍ରାତଃଭୋଜନ ପରେ ସେ ଆଗେଇ ଗଲେ ମଟରକୁ । ସୁଷମା ଦେବୀ ଘରୁ ବାହାରି ଆସିଲେ ଓ ବଗିଚାରୁ ଗୋଟିଏ ଗୋଲାପ ଆଣି ବଢ଼ାଇ ଦେଲେ ମହାପାତ୍ର ସାହେବଙ୍କ ଆଡ଼େ । ହସି ଫୁଲଟି ନେଇ ସେ ଆଗେଇ ଗଲେ ମଟର ଆଡ଼େ । ଚପରାଶି ସଲାମ କରି ମୋଟରର ଦୁଆର ଖୋଲି ଛିଡ଼ା ହେଲା । ମହାପାତ୍ର ସାହେବ ମୁହଁରେ ପାଇପ ଗୁଞ୍ଜି ମୋଟରରେ ସାଏଁ କରି ବାହାରି ଗଲେ । ଝଲକାଏ ଧୂଆଁ ମୋଟରର ପଛ ପଟୁ ବାହାରି କିଛିକ୍ଷଣ ପୋର୍ଟିକୋ ଭିତରେ ଏଣେ ତେଣେ ବୁଲି ମିଳାଇ ଗଲା ।

ସାଏଁ କରି ମୋଟର ଆସି ତାଙ୍କର ବିଚାରାଳୟ ସାମନାରେ ଛିଡ଼ା ହେଲା । ମୋଟରରୁ ବାହାରି ପାଇପରେ ପୁଣି ଅଗ୍ନି ସଂଯୋଗ କରି ସେ ସେଇ ସୁନ୍ଦରଠାଣିରେ ପଶିଲେ ଘର ଭିତରକୁ । ପେସ୍‌କାର ଚୌକି ଛାଡ଼ି ଛିଡ଼ା ହୋଇ ନମସ୍କାର କଲେ । ପୁଲିସ-ବାଲାମାନେ ଛିଡ଼ା ହୋଇ ପଡ଼ି ସାଲ୍ୟୁଟ କଲେ । ଓକିଲମାନେ ଛିଡ଼ା ହୋଇ ନମସ୍କାର କଲେ । କାହାରି ଆଡ଼କୁ ନ ଚାହିଁ ସମସ୍ତଙ୍କୁ ମୁଣ୍ଡ ହଲାଇ ପ୍ରତିନମସ୍କାର କରି ମହାପାତ୍ର ସାହେବ ଚୌକିରେ ବସି ପେସ୍‌କାର ଆଡ଼େ ଚାହିଁଲେ । ପେସ୍‌କାର ବୁଝିଲେ ସେ ଦିନକାର ମକଦ୍ଦମାଗୁଡ଼ିକର ନଥିପତ୍ର ଆଣିବାର ଆଦେଶ ହେଲା ।

ଶୀଘ୍ର ମକଦ୍ଦମା କାର୍ଯ୍ୟ ଶେଷ କରିବାକୁ ହେବ । ଦିନ ୩ଟା-ବେଳେ ଅଛି ସମାଜ ମଙ୍ଗଳ କେନ୍ଦ୍ର ସମିତିର ସଭା ଓ ଚା'ପାନ । ନିଜ ଅକ୍ଳାନ୍ତ ପରିଶ୍ରମରେ ସମାଜ ମଙ୍ଗଳ କେନ୍ଦ୍ର ପାଇଁ ନାନା ସ୍ଥାନରେ ଅନେକଗୁଡ଼ିଏ ଘର ତିଆରି କରି ସାରିଲେଣି । ଯେଉଁଥିରେ ସେ ହାତ ଦେଉଛନ୍ତି ସେଥିରେ ସେ ସଫଳ ହେଉଛନ୍ତି, ଭାଗ୍ୟ ବଳରେ ନୁହେଁ ନିଜର ପୁରୁଷକାର ବଳରେ । ନିଜର ସାଫଲ୍ୟ ଜୀବନର ତୃପ୍ତି ପ୍ରତିଫଳିତ ହୋଇଛି ତାଙ୍କର ଚରିତ୍ରରେ,

ଆଦର୍ଶରେ । ଜୀବନ ଉଦ୍ଦେଶ୍ୟମୟ, କର୍ମମୟ । ତାଙ୍କର ଘରର ଟେବୁଲ ସାମନାରେ ଯୋଗବଶିଷ୍ଠ ରାମାୟଣର କେତେକ ଅଂଶ ବଡ଼ ବଡ଼ ଅକ୍ଷରରେ ଲେଖା ହୋଇ ରହିଚି । "ଇହ ସଂସାରରେ ଯଥାଯୋଗ୍ୟ ପୁରୁଷାର୍ଥ ପ୍ରୟୋଗ କଲେ ସମସ୍ତେ ସବୁ ବିଷୟ ସର୍ବଥା ପ୍ରାପ୍ତ ହୋଇ ପାରିବେ । ପ୍ରାକ୍ତନ ପୁରୁଷାର୍ଥକୁ ଅର୍ଥାତ୍ ଦୈବକୁ ବର୍ତ୍ତମାନ ପୁରୁଷକାର ଦ୍ୱାରା ଜୟ କରିବା ସମ୍ଭବ । ଉତ୍ସାହ ସମନ୍ୱିତ ଦୃଢ଼ାଭ୍ୟାସୀ ଯତ୍ନଶୀଳ ପୁରୁଷ ଶତ ଶତ ସୁମେରୁ ପର୍ବତକୁ ମଧ୍ୟ ଚୂର୍ଣ୍ଣ କରିପାରେ । ହତବୁଦ୍ଧି ସମ୍ପନ୍ନ ପୁରୁଷକାରହୀନ ବ୍ୟକ୍ତି-ମାନେ କେବଳ କୁହନ୍ତି, ଦୈବ ମୋତେ ଏହିପରି କାର୍ଯ୍ୟରେ ନିଯୁକ୍ତ କରିଚନ୍ତି" । ପୁଣି ଆଉ ଗୋଟିଏ ଫଟାରେ ବଡ଼ ବଡ଼ ଅକ୍ଷରରେ ନାଲି କାଳିରେ ଲେଖା ଅଛି ଯୋଗବଶିଷ୍ଠ ରାମାୟଣର ଆଉ ଗୋଟିଏ କଥା "ଅଳ୍ପବଳ ବ୍ୟକ୍ତିମାନେ ପ୍ରଯତ୍ନଶାଳୀ ବଳବାନ ବ୍ୟକ୍ତିମାନଙ୍କର ଉପଦେଶ ସ୍ୱରୂପ" । ଅସାଧୁତା ବା ଆଳସ୍ୟ ସେ ଟିକିଏ ମାତ୍ର ସହ୍ୟ କରି ପାରନ୍ତି ନାହିଁ । କଠୋର ହସ୍ତରେ ଓ ନିର୍ମମ ଭାବରେ ସେ ତାହା ଦମନ କରନ୍ତି । ନିଜର ଜୀବନକୁ ମଧ୍ୟ ସେ ଗଢ଼ିଚନ୍ତି ସେହିପରି କଠୋର ଭାବରେ । ତଥାପି ତାଙ୍କର କର୍ମରେ ତୃପ୍ତି ନାହିଁ । କୁସୁମପୁର ଗ୍ରାମର ଲୋକେ କେତେକ ଟାଉଟରଆଙ୍କ କଥାରେ ମାତି ତାଙ୍କର ସମାଜମଙ୍ଗଳ କାମରେ ବାଧା ଉପୁଜାଉଛନ୍ତି । ତାଙ୍କ ସାମନାରେ ଥୁଆ ହୋଇଥିବା ସେହି ବିଷୟକ ନଥିଟି ପଢ଼ି ତାଙ୍କର କପାଳର ରେଖା ଘୃଣା ଓ କ୍ରୋଧରେ କୁଞ୍ଚିତ ହୋଇଗଲା । ମନେ ମନେ ସେ କହିଲେ, ଲୋକେ ଶିକ୍ଷିତ, ସାଧୁ ଓ ସର୍ବୋପରି ସୁଶୃଙ୍ଖଳ ନ ହେବା ପର୍ଯ୍ୟନ୍ତ ଗଣତନ୍ତ୍ର ସଫଳ ହେବା ଅସମ୍ଭବ । ଅଳ୍ପଦିନ ପୂର୍ବେ କୁସୁମପୁରରେ ଘଟିଥିବା ଗୋଟିଏ ଘଟଣା ତାଙ୍କର ମନେ ପଡ଼ିଯିବାରୁ ମନ ତାଙ୍କର କ୍ରୋଧା-

ନୃତ ହୋଇ ଉଠିଲା । ନାରୀମଙ୍ଗଳ କାର୍ଯ୍ୟ ପାଇଁ ସୁଷମା ଦେବୀ ଯାଇଥିଲେ ସେ ଗ୍ରାମକୁ ଓ ତାଙ୍କ ସହିତ ସେ ମଧ ଯାଇଥିଲେ । ସନ୍ଧ୍ୟାବେଳେ ସୁଷମା ଦେବୀଙ୍କ ସଭାପତିତ୍ୱରେ ଗୋଟିଏ ସଭା ହେବାର କଥା ପଡ଼ିଲା । କିନ୍ତୁ କୁସୁମପୁରର ମୁଖିଆମାନେ ଘୋର ଆପତ୍ତି ଜଣାଇଲେ ଯେ ସେମାନଙ୍କର ଝିଅ ବୋହୂମାନେ ସେ ସଭାରେ ଯୋଗ ଦେଇ ପାରିବେ ନାହିଁ । ଆସ୍ଫାଳନ କରି ସେମାନେ କହିଲେ ଯେ କୁସୁମପୁରର ଲୋକେ ବହୁଯୁଗର ପରମ୍ପରା ଛାଡ଼ି ନାରୀମାନଙ୍କୁ ଘରକଣରୁ ପଦାକୁ ବାହାର କରି ପାରିବେ ନାହିଁ । ମହାପାତ୍ର ସାହେବ ଋଗିଯାଇ କହିଲେ, "ଏ ବିଜ୍ଞାନ ଓ ନାରୀ ସ୍ୱାଧୀନତାର ଯୁଗରେ ପର୍ଦ୍ଦାନାସୀନ୍ ନାରୀ ଦେଖିଲେ ମୋତେ ଚିଡ଼ମାଡ଼େ ।"

ସୁନେଇ ପଧାନ ଛିଡ଼ା ହୋଇ ହାତ ଯୋଡ଼ି ଗୋଟାଏ ବକ୍ତୃତା ଝାଡ଼ି ଦେଲା । ଲୋକଟା ଟିକିଏ ପ୍ରାଠ ଶାଠ ପଡ଼ିତ । ତେଣୁ ସବୁ କଥାରେ ସେ କଥା କୁହେ, ଭାରି ବଡ଼ ବଡ଼ କଥା କୁହେ । ସମସ୍ତଙ୍କୁ ନମସ୍କାର କରି ସେ କହିଲା···

···ହଁ ଆଜ୍ଞା, ଚିଡ଼ମାଡୁଥିବ ଆପଣଙ୍କୁ । ଯିଏ ଯେତେ ବଡ଼ ଜ୍ଞାନୀ ହେଉନା କାହିଁକି ବା ବଡ଼ ଚାକିରି କରି ଥାଉ ନା କାହିଁକି ଗଣତନ୍ତ୍ର ଶାସନରେ କେହି ଏଡ଼େ ବଡ଼ ନୁହେଁ ଯେ ତାର ଚିଡ଼ ମାଡିବାକୁ ଲୋକେ ଡରିଯିବେ । ଆଉ ଯଦି ଡରେଇଲେ ତେବେ ଗଣତନ୍ତ୍ର ଶାସନ ହେଲାକି ? ଆପଣ ଆପଣଙ୍କ ମତାମତ କହିବେ ସିନା, ଚିଡ଼ମାଡ଼େ, ଘୃଣା ହୁଏ ଏସବୁ କହିପାରିବେ ନାହିଁ । ମୁଁ ଯଦି କୁହେ, ଆପଣଙ୍କ ସ୍ତ୍ରୀ ଯେଉଁ ଭଳି ସ୍ୱାମୀଙ୍କ ସେବାଛାଡ଼ି ସଦା-ବେଳେ ପାଉଡ଼ର ମାଖି ଦାମିକା ଶାଢ଼ି ପିନ୍ଧି ବୁଥାରେ ଏ ପାଖ ସେ ପାଖ ଧାଁ ଧପଡ଼ କରି ସବୁ ପୁରୁଷଙ୍କ ସହିତ ଅବାଧରେ ମିଳା-

ମିଶା କରୁଚନ୍ତି, ତା ଦେଖି ମୋତେ ଚିଡ଼ ମାଡ଼େ ଓ ଘୃଣା ହୁଏ, ତେବେ ଆପଣଙ୍କୁ କେମିତି ଲାଗିବ ! ଆଜ୍ଞା, ମୁଁ ତ ମୂର୍ଖ, ମୋ ଦୋଷ ଘେନିବେ ନାହିଁ । ତେବେ ମୁଁ ଯାହା ବୁଝିଛି ଗଣତନ୍ତ୍ରର ମୂଳକଥା ହେଉଛି ନିଜର ମତାମତ ବିଷୟରେ ନମ୍ରତା ରଖିବା ଅର୍ଥାତ୍ ନିଜର ମତ ଯେତେ ଦୃଢ଼ ବା ଯୁକ୍ତିସଙ୍ଗତ ହେଉ ନା କାହିଁକି ଅନ୍ୟର ମତାମତ ଶୁଣିବା ପାଇଁ ମନର ଦୁଆର ସଦାବେଳେ ଖୋଲା ରଖିବା । ନିଜର ମତର ଔଦ୍ଧତ୍ୟ ପ୍ରକାଶ କରିବା ନୁହେଁ, ମାନେ ଗୋଟାଏ ମତ ଧରି ନେବା ପରେ ମନର ଦୁଆର ସବୁ ବନ୍ଦ କରିଦେବା ନୁହଁ । ଯେଡେ ପାଛି ମୂର୍ଖ ହେଉ ନା କାହିଁକି ସମସ୍ତଙ୍କ ଠାରୁ କିଛି ଶିଖିବାର ଅଛି ଆଜ୍ଞା । ପଞ୍ଚମୁଖେ ହରି । ସେଦିନ ଜଣେ ବାବୁ ବକ୍ତୃତା ଦେଉ ଦେଉ ଗୋଟାଏ ଇଂରାଜି କଥା କହୁଥିଲେ, ଭାରି ଭଲ କଥାଟିଏ, ଭୁଲି ହେବ ନାହିଁ । ଭକ୍ସ ଦେଇ । ମାନେ ପଞ୍ଚମୁଖେ ହରି । ଗୀତାରେ ପରା ଆଜ୍ଞା କହିଛି ତଦ୍‌ବିଦ୍ଧି ପ୍ରଣି-ପାତେନ, ପରିପ୍ରଶ୍ନେନ ସେବୟା । ପ୍ରଣିପାତମାନେ ନମ୍ରତା ଅର୍ଥାତ୍ ସବୁ ମତାମତ ଶ୍ରଦ୍ଧା ସହକାରେ ଶୁଣିବା । ପରିପ୍ରଶ୍ନମାନେ ଉପର-ଠାଉରିଆ ଢଙ୍ଗର କଥା ଆଇନକୁ ଆଖିଠାରି ପରୁଶି ଦେବା ନୁହଁ, ମୂଳକଥା ବୁଝିବାକୁ ଚେଷ୍ଟା କରିବା । ସେବାମାନେ ସମସ୍ତଙ୍କ ଗୋଡ଼ ଘଷିବା ନୁହଁ ସମସ୍ତଙ୍କ ସହିତ ଘନିଷ୍ଠଭାବେ ମିଳିବା, ଦୁଃଖ ସୁଖରେ ଭାଗୀହେବା । କିନ୍ତୁ ମୁହଁରେ ଗଣତନ୍ତ୍ର କଥା କହି କାମରେ ଏକଛତ୍ର ଶାସନ ଭଲ କଥା କହିବା—ଏ ଦୋମୁହାଁ । ମାତରେ ଲୋକେ ବାଉଳା ହୋଇଯିବେ, ଅସାଧୁତା ବଢ଼ିବ । ନାହିଁ ଯଦି ଏକଛତ୍ର ଶାସନ ଚାହାନ୍ତି ତେବେ କରନ୍ତୁ ଆମର ଆପତ୍ତି ନାହିଁ । ଆମେ ମୁହଁ ସିଲାଇ କରିଦେବୁ, କେବଳ ଖୋଲିବୁ ଆପଣଙ୍କ ମତର ଜୟଗାନ କରିବାକୁ । କିନ୍ତୁ ଯେତେ ଘିଅ ଦୁଧରେ ଆପଣ

ଦେଶଟାକୁ ଉଚ୍ଛନ୍ନ ଯିବ ମଣିଷକୁ ତାର ନିଜର ମତ ପ୍ରକାଶ କରିବାକୁ ନ ଦେଲେ ତାକୁ ସେ ସବୁ ଆଦୌ ସୁଖ ଲାଗିବ ନାହିଁ । ସୁନା ଶିକୁଳି କି କେବେ ଭଲ ଲାଗେ ? ଯେତେ ମଙ୍ଗଳକର କାମ ହେଉ ନା କାହିଁକି ଜବରଦସ୍ତ ଉପରେ ଲଦି ଦେଲେ ତାହା ଏକଚ୍ଛତ୍ର ଶାସନ ଓ ସେଇ କାମକୁ ଲୋକଙ୍କ ସମର୍ଥନ ନେଇ ଲୋକଙ୍କ ମତାମତ ନେଇ କଲେ ଗଣତନ୍ତ୍ର ଶାସନ । ନାହିଁ, ଅମୁକ ଦେଶ ତମୁକ କଲାଣି ଆମେ ଗୋଲ କରିବା । ଏମିତି ଅନ୍ଧାଧୁନ୍ଦିଆ ଭାବରେ ଲାଭ କଅଣ ?...

ବସ଼ଃ ତୁମେ, ଢେର କହିଲଣି ବାଜେକଥା । ମହାପାତ୍ର ସାହେବଙ୍କ ପାଖ ଲୋକେ ଗର୍ଜିଉଠିଲେ ।

ଆଜ୍ଞା ବସୁଚି, କହି ସୁନେଇ ପଧାନ ବସି ପଡ଼ିଲା ସତ କିନ୍ତୁ ମହାପାତ୍ର ସାହେବଙ୍କ ଅନ୍ତରାତ୍ମା ଜଳାଇ ଦେଇଗଲା ।

ପେସ୍‌କାର ମକଦ୍ଦମା ନଥିପତ୍ର ଧରି ଛିଡା ହେଲା । ପ୍ରଥମ ନଥିଟି ନେଇ ପଢ଼ି ମହାପାତ୍ର ସାହେବ ଆଦେଶ ଦେଲେ ମୁହାଲାକୁ

ଟୁଣୁକା ପରଜା ହାଜର ହୋ, ଟୁଣୁକା ପରଜା ହାଜର ହୋ...

ଝାଳ ପୋଛୁ ପୋଛୁ ଗୋଟିଏ ଲୋକ ଦୌଡ଼ି ବଚ୍ଚାରାଳୟ ଭିତରକୁ ପ୍ରବେଶ କରି ବଲ ବଲ କରି ଚାରିଆଡେ ଚାହିଁଲା । ପିନ୍ଧିଚି ଖଣ୍ଡିଏ ସାନ ଗାମୁଛା । ସେଥିରେ ପୁଣି ଚିରାର ଫାଳେ ଦିଶୁଚି । ପୁଲିସ୍ କନେଷ୍ଟବଲ ତାର ହାତ ଧରି କାଠଗଡା ଭିତରେ ଭରତି କରି ଦେଲା । ଚାରିଆଡେ ସୁନ୍ଦର କାଠର କାନ୍ଥ ଦେଖି ତାକୁ ଖୁବ ଆନନ୍ଦ ଲାଗିଲା । ସେ କନେଷ୍ଟବଲକୁ ଚାହିଁ କୃତଜ୍ଞତାସୂଚକ ହସ ହସି ବଚ୍ଚାରକଙ୍କୁ ଜୁହାର କଲା । ମହାପାତ୍ର ସାହେବ କାଗଜରୁ ମୁହଁ ନ ଟେକି ପଚାରିଲେ, ତୁମର ନାମ ?

—ଟୁଣୁକା ପରଜା

—ପିତାର ନାମ ?

ମୂଦାଲି ମାରବ ।

—ପିତାଙ୍କ ନାମ କଅଣ ? ପ୍ରଶ୍ନରେ ବିରକ୍ତ । ସାମାନ୍ୟ ଟିକଏ ସମୟ ନଷ୍ଟ ହେଲେ ତାଙ୍କୁ ବିରକ୍ତ ଲାଗେ ।

ଟୁଣୁକା ପରଜା ଚାହାଁରହ ।

—ବାପା ନା' ଜାଣୁନା ? ପେସ୍‌କାର ରାଗିଯାଇ ପଚାରିଲା ।

—ଆଇଜ୍ଞା, ମନେ ପଡୁନାହିଁ, ଟୁଣୁକା କହିଲା ।

ମହାପାତ୍ର ସାହେବ ଆଶ୍ଚର୍ଯ୍ୟ ହୋଇ ଚାହିଁଲେ ମୁଦାଲି ଆଡେ । ଟିକଏ ଘୃଣା ଓ ବିରକ୍ତ ମଧ୍ୟ ଫୁଟି ଉଠିଲା ତାଙ୍କ ମୁହଁରେ ।

ପେସ୍‌କାର ନଥି ଦେଖି କହିଲେ, ବାପାର ନାମ ତୋର ଝାଉ ପରଜା ?

ହଁ ହଁ । ସେତେବେଳେ ମୁଣ୍ଡ ହଲାଇ ହସି ଉତ୍ତର ଦେଲା ଟୁଣୁକା ।

ମହାପାତ୍ର ସାହେବ ପୁଣି ପଚାରିଲେ, ବୟସ କେତେ ?

ଆଠ ବରଷ ।

ଏଥର ମହାପାତ୍ର ସାହେବ ଆଉ ଧୈର୍ଯ୍ୟ ଧରି ପାରିଲେ ନାହିଁ । ଗର୍ଜି ଉଠି କହିଲେ, କଅଣ ତୁମେ ପାଗଳ ନା ମୋ ସହିତ ଖେଳୁଚ ? ଅଦାଲତ ଅବମାନନା 'ଦୋଷରେ ତୁମକୁ ଦଣ୍ଡଦେବି ଜାଣ ?

ଟୁଣୁକା ଅବାକ୍ ଭାବରେ ଚାହିଁ ରହିଲା । ପେସ୍‌କାର ଧୀରେ କହିଲା, ଆଜ୍ଞା ସେମାନେ ବୟସ କଅଣ ଜାଣନ୍ତି ନାହିଁ । ବୟସ ତାର ଅନ୍ଦାଜ ପଚିଶ ଲେଖନ୍ତୁ ।

ବୟସ ଲେଖି ମହାପାତ୍ର ସାହେବ ଗମ୍ଭୀର ଭାବରେ ପଚାରିଲେ, ତୁମ୍ଭେ—ତାଡ଼ିଖରେ ମଦଖାଇ ସର୍ବସାଧାରଣ ରାସ୍ତାରେ ଗୋଳମାଳ କରୁଥିବାର ଅଭିଯୋଗ ଆଗତ ହୋଇଚି । ଏ ବିଷୟରେ କଅଣ କହିବ ?

ଟୁଣୁକା ଆଶ୍ଚର୍ଯ୍ୟ ହୋଇ ଗୁରୁଆଡେ ଗୁହିଁ କହିଲା, "ନାହିଁ ଆଜ୍ଞା, ମୁଁ କ ଗୁରୁ ଲୋକ, ମୋର ସେ ସାହାସ ହେବକି ? ମଦ ଟିକଏ ଖାଇ ଦେଇଥିଲି, ଟିକଏ ମାତିଥିଲି । ଆକାଶକୁ ଗୁହିଁ ମନଟା କଅଣ ହୋଇଯିବାରୁ ଗାଇଲି, ପାପ ପୁଣ୍ୟ ମଧ୍ୟେ ତୁମେ ଅଛ ପ୍ରଭୁ ତେଣୁ ସବୁ ଅଟେ ଭଲ ଯେ···

ଟୁଣୁକା ଖାନ୍ତମନ୍ତ ସୁର କରି କାନରେ ହାତ ଦେଇ ଗାଇବାକୁ ଲାଗିଲା ଆଖି ବୁଜି ବାହାର ହୋଇ ।

ଚୁପ୍ କର । ମହାପାତ୍ର ସାହେବ ଗର୍ଜି ଉଠିଲେ ।

ହଁ ଆଜ୍ଞା, ମୁଁ ନିଜେ ରଚିଛି ଏ ଗୀତ, ହେଁ ହେଁ···

ତୁମ୍ଭେ ଦୋଷୀ ନା ନିର୍ଦ୍ଦୋଷ ? ମହାପାତ୍ର ସାହେବ ଆଇନଗତ ପ୍ରଶ୍ନ ପଗୁରିଲେ ।

ଆଜ୍ଞା କଅଣ ଗୀତ ବାନ୍ଧିବା···

ନାହିଁ, ମଦଖାଇ ଗୋଳମାଳ କରିବା କଥା ।

ହଁ ହଁ, ହଁ ହଁ, ମୁଁ ଦୋଷୀ ।

ମହାପାତ୍ର ସାହେବ ମୁଦାଲିର ବିବୃତି ଲେଖି ଦେଇ ରାୟ ଦେଲେ, ତୁମକୁ ଦଶଟଙ୍କା ଜୋରିମାନା କରାଗଲା, ନ ଦେଲେ ଦଶଦିନ ବିନାଶ୍ରମ କାରାଦଣ୍ଡ ।

ମୁଦାଲି ଏ ରାୟ ଅଣ୍ଟା ଭିଡ଼ି ହସି କହିଲା, ଆଜ୍ଞା ଦଶଟଙ୍କା !!

ମହାପାତ୍ର ସାହେବଙ୍କ ଇଙ୍ଗିତରେ କନେଷ୍ଟବଲ ମୁଦାଲିକୁ ନେଇଗଲା ।

ମହାପାତ୍ର ସାହେବ ଦ୍ୱିତୀୟ ନଥି ଧରିଲେ ।

ହର ଡମ୍ବ ହାକର ହେ, ହର ଡମ୍ବ ହାକର ହେ, ହର ଡମ୍ବ ହାକର ହେ···

'ହାଜର ହେଁ' କହି ହର ଡ଼ମ୍ଭ ଲମ୍ବେ ଲମ୍ବେ ଚାଲିଗଲା କାଠଗଡ଼ା ଭିତରକୁ । ନଜେ କାଠଗଡ଼ା କବାଟ ବନ୍ଦକର ହାତ-ଯୋଡ଼ି ଛିଡ଼ା ହେଲା । ପିନ୍ଧିଛ ଗୋଟିଏ ଧୋତି ଓ ଗୋଟିଏ ମଇଳା କମିଜ । କାନ୍ଧରେ ପଡ଼ିଛ ଖଣ୍ଡେ ଗାମୁଛା ସ୍ଥାନେ ସ୍ଥାନେ ରକ୍ତ ଲାଗିଛ । ମୁହଁଯାକ ବସନ୍ତର ଚିହ୍ନ । ଗୋଟିଏ ଗାଲ ଅସ୍ୱାଭାବିକ ଭାବେ ଫୁଲିଛ ।

ମହାପାତ୍ର ସାହେବ ନଥିପତ୍ର ପଢ଼ି ପଚାରିଲେ, ତୁମ୍ଭ ବିରୁଦ୍ଧରେ ଅଭିଯୋଗ ଯେ ଗତ ମଙ୍ଗଳବାର ଦିନ ଖଇରପୁର ହାଟ ଭିତରୁ ତୁମ୍ଭେ ଫଗୁ ପାତ୍ରଙ୍କର ଗୋଟିଏ ପୁରୁଣାଛତା ଚୋରିକର ନେଇ ପଳାଇ ଯାଉଥିବା ସମୟରେ ତୁମ୍ଭଙ୍କୁ ଲୋକମାନେ ଧର ତୁମ୍ଭ ପାଖରୁ ଚୋରି ମାଲ ଜବତ କଲେ । ଏ ବିଷୟରେ ତୁମ୍ଭର କଅଣ କହିବାର ଅଛି ?

କିଛି କହିବାର ନାହିଁ ହଜୁର । ଏ କଥା ସତ । ସାତ ବରଷ ଆଗେ ଥରେ ଚୋରିକରି ସାତମାସ ଜେଲ ଯାଇଥିଲି । ତାପରେ ଆଉଥରେ ଚୋରି କରିଥିଲି କିନ୍ତୁ ପ୍ରମାଣ ନ ମିଳିବାରୁ ଛାଡ଼ ପାଇଥିଲି । ଯେତେ ଚେଷ୍ଟାକଲେ ବି ଏ ଇଚ୍ଛା ଯାଉନାହିଁ । ସେଦିନ ସାଙ୍ଗମାନେ ଟିକିଏ ମଦ ଖୁଆଇ ଦେଲେ । ନିଶାରେ ଖାଲି ଚୋରି କଥା ଫେର୍ ମନେ ପଡ଼ିଗଲା, ଚୋରିକରି ପକାଇଲି ।

ଏତିକ କହି ହରି ଡ଼ମ୍ଭ କାନ୍ଦିବାକୁ ଲାଗିଲା ।

ମହାପାତ୍ର ସାହେବ ତା ଆଡ଼େ ଚାହିଁ ପଚାରିଲେ, ତୁମ୍ଭର ଗାଲ ଫୁଲିଛ କାହିଁକି ? ଆଉ ତୁମ ଗାମୁଛାରେ ରକ୍ତର ଦାଗ ଲାଗିଲା କେମିତି ?

ସେ କିଛି ନୁହେଁ ଆଜ୍ଞା, ମୁଦାଲା ଗାମୁଛାଟି ଲୁଚାଇ ଦେଲା ।

ମହାପାତ୍ର ସାହେବଙ୍କ ସନ୍ଦେହ ହେଲା । ସେ ପୁଣି ପଚାରିଲେ ।

ହରି ଡମ୍ବ କହିଲା, ମୋତେ ଧରି ଲୋକେ ଜମିଦାରଙ୍କ ଭାଇ ପାଖକୁ ନେଇଗଲେ । ସେ ମୋତେ ବିସ୍ତୁକ ମାଡ଼ ଦେଲେ । ମୋର ଦୁଇଟି ଦାନ୍ତ ଭାଙ୍ଗିଗଲା । ତାଙ୍କର ଦୋଷ କଅଣ ? ମୋରି ଦୋଷର ଫଳ ପାଇଲି ।

ତୁମ୍ଭେ ଏ ବିଷୟରେ ଆପତ୍ତି କରିଚ ?

ନାହିଁ ଆଜ୍ଞା, ଏମିତି ଆପତ୍ତି କଲେ ଧର୍ମ ସହିବ ନାହିଁ ।

ତୁମ୍ଭେ ଦୋଷୀ ନା ନିର୍ଦ୍ଦୋଷୀ ?

ମୁଁ ଦୋଷୀ ?

ମହାପାତ୍ର ସାହେବ ରାୟଦେଲେ, ତୁମ୍ଭଙ୍କୁ ଏକବର୍ଷ ସଶ୍ରମ କାରାଦଣ୍ଡ । ହରି ଡମ୍ବ କୃତଜ୍ଞ ଭାବରେ ମୁଣ୍ଡ ନୁଆଇଁ ଜୁହାର ହୋଇ ପୁଲିସ୍ କନେଷ୍ଟବଲକୁ ହାତ ବଢ଼ାଇଦେଲା ।

ମହାପାତ୍ର ସାହେବ ତୃତୀୟ ନଥି ପଢ଼ିବାକୁ ଲାଗିଲେ ।

ଦୁଇଜଣ ପୁଲିସ୍ କନେଷ୍ଟବଲ ଅପରାଧୀ ବିଦେଇ ଦାସକୁ କାଠଗଡ଼ା ଭିତରେ ଭରତି କରି ଜଗି ଛିଡ଼ାହୋଇ ରହିଲେ । ବଡ଼ ବିପଜ୍ଜନକ କଏଦୀ ଏ । ତେଣୁ ତାର ହାତକଡ଼ା ଖୋଲା ହେଲା ନାହିଁ । ଚୋରି ଅପରାଧରେ ଏ ଦଶମାସ କାରାଦଣ୍ଡ ଭୋଗ କରୁଥିଲା । ଛଅମାସ ଭୋଗ ହେବା ପରେ କିଛିଦିନ ପୂର୍ବେ ସେ ଜେଲଖାନାରୁ ପଳାଇ ଯାଇ ଧରା ପଡ଼ିଚି । ତାର ପଳାୟନ ପନ୍ଥା ଅତି ଦୁଃସା-ହସିକ । ରାତିରେ ସବୁ କଏଦୀ କଏଦୀଖାନାରେ ପଶିବା ପରେ ଘରେ ତାଲା ଲାଗିଲା । କଏଦୀମାନେ ଘରେ ଶୋଇଲେ । ଘରର କାନ୍ଥ ଅତି ଉଚ୍ଚ । ଝରକା ଆଦୌ ନାହିଁ । କେବଳ ଛାତକୁ ଲାଗି ଆଲୁଅ ଆସିବା ପାଇଁ ସାନ ସାନ ଜଳାକବାଟି କେତୋଟି । ରାତିରେ ସମସ୍ତେ ଶୋଇବା ପରେ ବିଦେଇ ଚଦରକୁ ଚଦର ଗଣ୍ଠି ଦେଇ ତାକୁ ଫୋପାଡ଼ି ସେ ଜଳା କବାଟିରେ ଅଟକାଇ ସେ ବାଟେ ଛାତ

ଉପରକୁ ଉଠିଲା । ସେଠାରୁ ଏକା ଡିଆଁକେ ଯାଇ ଉଠିଲା ଜେଲ୍‌ଖାନାର ସୁଉଚ୍ଚ ପାଚେରୀ ଉପରେ ୧୫ ହାତ ଦୂରରେ । ସେଠାରୁ ଡେଇଁଲା ୪୦ ହାତ ତଳେଥିବା ଭୂଇଁକୁ । ସେଇ ରାତିରେ ବଦେଇ ଗଲା ନିଜ ଗାଁକୁ ୩୦ ମାଇଲ ଦୂରରେ ।

ମହାପାତ୍ର ସାହେବ ନଥିରୁ ଘଟଣାଟି ପଢ଼ି ତରଟି ଗୁହିଁଲେ ମୁଦାଲୀ ଆଡ଼େ । ଆଖିରେ ତାଙ୍କର କଠୋରତା ଫୁଟି ଉଠିଲା । ଆଇନ ବନ୍ଧ ବାହାର କରି ଦେଖିଲେ ଏ ଦୋଷପାଇଁ ଦୁଇବର୍ଷ ଜେଲ୍ ଦିଆଯାଇ ପାରେ ।

ତୁମର କଣ କହିବାର ଅଛି ? ମହାପାତ୍ର ଆଇନଗତ ପ୍ରଶ୍ନ ପଚାରିଲେ ।

ଆଖିରୁ ଲୁହ ପୋଛି ବଦେଇ କହିଲା, ଜେଲ୍‌ଖାନାକୁ ଆସିବାବେଳେ ମୋର ବାହା ହୋଇଥିଲା । ସେ ଦିନ ରାତିରେ ତା କଥା ମନେ ପଡ଼ିବାରୁ ମନଟା କେମିତି ଘାଣ୍ଟି ଚକଟି ହେଲା । ମୁଁ ତା ପରେ ଯାହା କରିଚି ବେହୋସ୍‌ରେ କରିଚି । ମୋର ହୋସ୍ ହେଲା ଯାଇ ଗାଁରେ, ସେତେବେଳେ ବୁଝିଲି ମୁଁ କଣ କରିଛି । ମୋତେ ଦଣ୍ଡ ଦିଅନ୍ତୁ । ମୁଁ ଦୋଷୀ, ମୁଁ ଦୋଷୀ । ହଜୁର ତାକୁ ଛାଡ଼ି ବେଶି ଦିନ ମୁଁ ରହି ପାରିବି ନାହିଁ, ମୋତେ ଅଳ୍ପ ଦଣ୍ଡ ଦେବେ ।

ଏତିକି କହି ବଦେଇ ପୁଣି ଅଧୀର ହୋଇ ପଡ଼ିଲା । ଆଖିରୁ ପାଣି ଝରି କାଠଗଡ଼ା ଭିତରେ ଟପ୍ ଟପ୍ ପଡ଼ୁଛି । ପୋଛିବାର ଉପାୟ ନାହିଁ । ଦୁଇ ହାତରେ ଲୁହା ଶିକୁଳି ।

ମହାପାତ୍ର ସାହେବ ଆଦେଶ ଦେଲେ ଶିକୁଳି ଖୋଲି ଦେବାକୁ । ଲୁହ ପୋଛି ମୁଣ୍ଡ ଟେକିବାକୁ ପୋଲିସ ମୁଦାଲୀ ଛୁଟା ହେଲା । ମହାପାତ୍ର ସାହେବଙ୍କ ହଠାତ୍ ମନେ ହେଲା ବଦେଇ ଗୋଟିଏ ମଣିଷ । ସେ ଧୀରେ ଧୀରେ କହିଲେ, "ଦେଖ ବଦେଇ ଦାସ, ତୁମେ ନିଜେ

ବାପ୍ପର ଢର, ମୁଦାଲ୍ ଯେଉଁ ଅପରାଧ କରିଚ ଆଇନ ଅନୁସାରେ ତାର ଚରମ ଦଣ୍ଡ ଦୁଇ ବର୍ଷ କାରାଦଣ୍ଡ । ତୁମେ କୁହ, ମୁଦାଲର କେତେ ଦଣ୍ଡ ପାଇବା ଉଚିତ ତୁମେ ମନେ କରୁଚ ।

ବଦେଇ ଦାସର ଅଦ୍ଭୁତ ପରିବର୍ତ୍ତନ ହେଲା । କାଠଗଡ଼ା ଭିତରେ ଯିଏ ଛିଡ଼ା ହୋଇଚି ସିଏ ଆଉ ମୁଦାଲ୍ ନୁହଁ, ବଦେଇ ଦାସ, ପିତା-ଉମେଇ ଦାସ, ନିବାସ ରାମପୁର । ବଦେଇ ଦାସ, ଯିଏ ଗତ ନିର୍ବାଚନରେ ବିଧାନ ସଭା ଓ ଲୋକସଭାକୁ ପ୍ରତିନିଧି ବାଛିଚ । ସେଇ ବଦେଇ ଦାସ ଭାବୁଚି ମୁଦାଲର କେତେ ଦଣ୍ଡ ହେବା ଉଚିତ । କିଛିକ୍ଷଣ ଭାବି ବଦେଇ କହିଲା, ଏକବର୍ଷ ଦଣ୍ଡ ପାଇବା ଉଚିତ ।

ମହାପାତ୍ର ସାହେବ ମଧ୍ୟ ଠିକ୍ ସେଡିକି ଭାବିଥିଲେ । ଦଣ୍ଡାଦେଶ ଶୁଣି ମୁଦାଲ୍ ସ୍ତମ୍ଭିତ ଭାବରେ ଛିଡ଼ା ହୋଇ ରହିଲା । ମୁହଁରୁ ତାର କଥା ବାହାରିଲା ନାହିଁ । ହାତକଡ଼ି ପିନ୍ଧାଇ କନେଷ୍ଟବଲ ତାକୁ ଟାଣି ଟାଣି ନେଇଗଲେ । ବଦେଇ ଫେରି ଫେରି କେବଳ ବ୍ୟାକୁଳ ଭାବରେ ମହାପାତ୍ର ସାହେବ ଆଡ଼େ ଚାହୁଁଥାଏ ।

ମହାପାତ୍ର ସାହେବ ଦୀର୍ଘ ନିଶ୍ୱାସ ପକାଇ ଚାହିଁ ରହିଲେ ତା ଆଡେ । ତାଙ୍କର ମନଟା ଘାରିଦେଲା । ଅପରାଧୀକୁ ନିଜର ବିଚାର କରିବାକୁ କହିବାର ହୀନତା ପାଇଁ ତାଙ୍କର ମନ ଅନୁଶୋଚନାରେ ଭରି ଉଠିଲା ।

କେତେକ୍ଷଣ ଚାହିଁ ରହିଥିଲେ ସେ ଆଡେ, ତାଙ୍କର ଖିଆଲ ନ ଥିଲା । ହଠାତ୍ କାଠଗଡା ଆଡ଼େ ଦୃଷ୍ଟି ପଡ଼ିବାରୁ ଦେଖିଲେ ଗୋଟିଏ ଅଦ୍ଭୁତ ମଣିଷ ଛିଡ଼ା ହୋଇଚ । ବାଳଗୁଡ଼ିକ ଫୁରୁ ଫୁରୁ ଉଡୁଚ । ବେକ ଉପରେ ପଡ଼ିଚି ଗୋଟିଏ ବଡ଼ ଜୁଡ଼ା । କେତେ ବର୍ଷ ହେବ ବୋଧହୁଏ ମୁଣ୍ଡରେ ତେଲ ପଡ଼ି ନାହିଁ କି ପାନିଆ

ଲାଗି ନାହିଁ କି ସେ ଜୁଡ଼ା ବି ଫିଟି ନାହିଁ । ଦାନ୍ତଗୁଡ଼ିକ ହଳଦିଆ । ହିପଣ୍ଡ କାଳିଆ, ପାଞ୍ଚ ହାତର ପୁରୁଷଟାଏ । ନା’ ତାର ଅବୋଲକରା ସାହା ।

ହାତକଡ଼ି ଖୋଲି ଦେବା ପରେ ଅବୋଲକରା ଦାନ୍ତ ନିକୁଟି ହସିଲା । ଖତେଇ ହେଲାପରି ମନେ ହେଲା । ହାତଯୋଡ଼ି ଜୁହାର ଦେଲାରୁ ଦେଖାଗଲା ଦୁଇଟି ହାତଯାକ ତାର କୁଷ୍ଠରୋଗଗ୍ରସ୍ତ ।

ନିଜର କକାକୁ ଏ ଠେଙ୍ଗିରେ ଟିକି ଟିକି କରି କାଟି ପକାଇଚି । ଅପରାଧ ଓ ଅପରାଧୀର ଇତିହାସ, ଅବୋଲକରାର ବାପ ମାଆ ତାର ପିଲାଦିନରୁ ମରିଗଲେ । ଦଶ ବର୍ଷ ବୟସରେ ତାହାର କୁଷ୍ଠ ରୋଗ ଆରମ୍ଭ ହେବାରୁ ସେ ଗାଁ ଛାଡ଼ି ପଳାଇଗଲା ମହାଦେବଙ୍କ ପାଖରେ ଧାରଣା ପଡ଼ିବାକୁ । ତା ପରେ କିଛି ଫଳ ନ ହେବାରୁ ଅନେକ ବର୍ଷ ଏଠି ସେଠି ବୁଲି ଶେଷରେ ଗ୍ରାମକୁ ଫେରିଲା ସାଙ୍ଗରେ ସ୍ତ୍ରୀ ଓ ବାଳୁତ ନେଇ । ତାହାର କକା ଇତିମଧ୍ୟରେ ତାହାର ଜମି ଭୋଗ କରୁଥିଲା । ଜମି ବା କେତେ, ମାଣେ ହେବ କି ନା । କିନ୍ତୁ କକା ଆଉ ତାକୁ ଛାଡ଼ିବାକୁ ନାରାଜ । କକା ପୁତୁରା ଭିତରେ ରୋଜ କଳି ଲାଗିଲା । କକା ଭାରି ଅତ୍ୟାଚାର କଲା ଅବୋଲକରା ଉପରେ । ଶେଷରେ ଦିନେ ରାତିରେ କକା ଅବୋଲକରା ଘରକୁ ଠେକା ଡ଼ିମା ଫୋପାଡ଼ିବାକୁ ଲାଗିଲା । ଅବୋଲକରା ଯେତେ ନେହୁରା ହେଲା ଶୁଣିଲା ନାହିଁ । ଚାଳରେ ଛଣ କେରାଏ କେରାଏ କେଉଁଠି କେଉଁଠି ପଡ଼ିଚି । ଗୋଟାଏ ଡ଼ିମା ଚାଳରୁ ଗଳି ପଡ଼ିଲା ଅବୋଲକରା ପୁଅ ଉପରେ । ପୁଅ ଥରେ କାନ୍ଦି ଅଜ୍ଞାନ ହୋଇଗଲା । ଅବୋଲକରା ଠେଙ୍ଗିଆ ଧରି ଧାଇଁ ଗଲା ବାହାରକୁ ଆଉ ସାଙ୍ଗେ ସାଙ୍ଗେ କକା ତା'ର ଏକା ପାହାରକେ ଖତମ । ସେତିକରେ ସନ୍ତୁଷ୍ଟ ନ ହୋଇ ଅବୋଲକରା ତାକୁ ଟିକି ଟିକି କରି କାଟିଲା ସେଠି ।

ପ୍ରଥମ ସାକ୍ଷୀ ଆସି ସାକ୍ଷ୍ୟ ଦେଇଗଲା । ଅବୋଲକରର ସେଥିପ୍ରତି ଭ୍ରୂକ୍ଷେପ ନାହିଁ । ସେ ବାହାରକୁ କାହାଆଡ଼େ ଚାହିଁ ହସୁଛି ଓ ହାତଠାରି ଡ଼ାକୁଛି ଓ ମଝିରେ ମଝିରେ ତାଳି ମାରୁଛି ।

ଲୋକଟା ପାଗଳ ହୋଇ ଯାଇଛି ନା କଅଣ ? ମହାପାତ୍ର ସାହେବ ପଚାରିଲେ ।

ନା ଆଜ୍ଞା, ବାହାରେ ତାହାର ସ୍ତ୍ରୀ ତାହାର ପୁଅକୁ ଧରି ଠିଆ ହୋଇଛି । ସେ ପୁଅକୁ ଖେଳାଉଛି ।

ତାର ସ୍ତ୍ରୀ କାହିଁକି ଆସିଛି ?

ସାକ୍ଷୀ ଦେବାକୁ ।

ସାକ୍ଷୀ !!

ହଁ ଆଜ୍ଞା, ସେଇ ତ ଏକମାତ୍ର ସାକ୍ଷୀ ଯିଏ ସବୁ ଦେଖିଛି ।

ପ୍ରଥମ ସାକ୍ଷୀ ପରେ ଅବୋଲକରର ସ୍ତ୍ରୀ ଆସି ଠିଆ ହେଲା ତାର କୋଳରେ ଧରି କାଳିଆ କଟ କଟ ବକଟେ ପିଲା, ଚେମିଣିଆ ଛୁଆ ପରି । ଅବୋଲକରକୁ ଆଉ ସମ୍ଭାଳି ହେଲା ନାହିଁ । ସବୁ ବାଧା ଏଡ଼ି ଦେଇ ସେ ଦୌଡ଼ି ଆସିଲା ତା ପୁଅ ପାଖକୁ । ମହାପାତ୍ର ସାହେବ ଆଦେଶ ଦେଲେ ମୁଦାଲାକୁ ବାଧା ନ ଦେବାକୁ । ଅନେକକ୍ଷଣ ଆଦର କରିବା ପରେ ମହାପାତ୍ର ସାହେବ କହିଲେ, ଏଥର ଯାଅ ତୁମ ସ୍ଥାନକୁ । ନିଜ ଜାଗାରେ ଠିଆ ହୋଇ କାନ୍ଦୁଥାଏ ଓ ପୁଅକୁ ଚାହିଁ ହସୁଥାଏ ।

ମହାପାତ୍ର ସାହେବ ଚୌକି ଛାଡ଼ି ଉଠି କହିଲେ, ଆଜି ବିଚାର ଏତିକିରେ ଥାଉ ।

ସମାଜ ମଙ୍ଗଳ କେନ୍ଦ୍ରର ସଭା କାର୍ଯ୍ୟ ଶେଷ କରି ନିଜ ଘରକୁ ଫେରୁ ଫେରୁ ତାଙ୍କର ଭାରି ଇଚ୍ଛା ହେଲା ଥରେ ଜେଲ୍‌ଖାନାରେ ଆଜିକାର ଅପରାଧୀମାନଙ୍କୁ ଦେଖି ଆସିବାକୁ । ଜେଲର ସମସ୍ତାନେ

ତାଙ୍କୁ ଭିତରକୁ ନେଇଗଲେ । କଏଦୀମାନେ ସେତେବେଳେ ଧାଡ଼ି ଧାଡ଼ି ହୋଇ ଖାଇ ବସିଥାଆନ୍ତି । ଟେଣ୍ଡୁକାର ଭାତ ଥାଳରେ ହାତ ରହିଛି କିନ୍ତୁ ଆକାଶକୁ ଚାହିଁ ସେ ଗୀତ ଗାଇ ଚାଲିଛି ଗୁଣୁ ଗୁଣୁ ହୋଇ, ମୁହଁରେ ତାର ହସ ଲାଗି ରହିଛି । ହରି ଓମ୍ଫ ବଡ଼ ବଡ଼ ଗୁଣ୍ଡା କରି ଖାଇ ଚାଲିଛି, କୌଣସି ଆଡ଼କୁ ତାର ନଜର ନାହିଁ । ମହାପାତ୍ର ସାହେବ କିଛିକ୍ଷଣ ତା ପାଖରେ ଛିଡ଼ା ହେବା ପରେ ତାର ନଜର ପଡ଼ିଯିବାରୁ ସେ ଛିଡ଼ା ହୋଇ ଅଇଣ୍ଠା ହାତରେ ଜୁହାର କରି ଲଜ୍ଜାରେ ହସି ଦେଲା ।

ବଦେଇ ଦାସ କିନ୍ତୁ ଚାହିଁ ରହିଛି ଶୂନ୍ୟ ଦୃଷ୍ଟିରେ, ଆଖିରୁ ତାହାର ପାଣି ଝରି ପଡ଼ୁଛି । ଘନ ଘନ ଦୀର୍ଘ ନିଃଶ୍ୱାସ ପଡ଼ୁଛି ।

ଦାସେ ଖାଅ, ମହାପାତ୍ର ସାହେବ କବାଟରେ ଛିଡ଼ା ହୋଇ କହିଲେ ।

ମହାପାତ୍ର ସାହେବଙ୍କୁ ଦେଖି କାନ୍ଦ ପକାଇ ବଦେଇ ଦାସ କହିଲା, ହଜୁର ମୋତେ ମୋର ବଗିର ପାଇଁ କହିଲେ ?

ମୋର ଦୋଷ ହୋଇଛି ବଦେଇ, ମୋର ଦୋଷ ହୋଇଛି । ମହାପାତ୍ର ସାହେବଙ୍କ ଆଖି ଛଳଛଳ ହୋଇଗଲା । ସେଠାରୁ ତରତର ହୋଇ ଚାଲିଗଲେ ।

ଅବୋଲକରା କୁଷ୍ଠ ରୋଗୀ ବୋଲି ତାକୁ ଅଲଗା ଖାଇବାକୁ ଦିଆ ହୋଇଛି । ସେଠି ଯାଇ ଦେଖିଲେ ଅବୋଲକରାର ଭାତଗୁଣ୍ଡା ସହ ହାତ ମୁହଁକୁ ଆସୁ ଆସୁ ଅଧବାଟରେ ରହିଯାଇଛି । ଅନେକ-କ୍ଷଣ ଛିଡ଼ା ହେଲେ ସେଠି । କିନ୍ତୁ ଅବୋଲକରାର ହାତ ସେମିତି ରହିଛି । ଆଖିରୁ ତାର ପାଣି ଝରି ପଡ଼ି ଭାତ ଉପରେ ପଡ଼ି ପଡ଼ି ଜମି ଗଲାଣି ଅନେକ, ସେ ଭାବୁଛି ତାର ପୁଅ ଆଜି ଖାଇବାକୁ ପାଇ ନ ଥିବ ।

କିଛି ନ କହି ମହାପାତ୍ର ସାହେବ ଘରକୁ ଫେରିଲେ ସୁଷମା ଦେଖି ଦୌଡ଼ି ଆସି ମୃଣାଳ ବାହୁ ବଲ୍ଲରୀ ତାଙ୍କର ବେକରେ ଜଡ଼ାଇ ଦେଇ ପଚାରିଲେ, ଆଜି ଲଞ୍ଚ ଖାଇ ଆସିଲ ନାହିଁ ଯେ ? ମୁଁ ଭାବି ଭାବି…

ମହାପାତ୍ର ସାହେବ ତାଙ୍କୁ ଠେଲି ଦେଇ ମାରବଲରେ ବସି ପଡ଼ିଲେ ଆରାମ ଚୌକି ଉପରେ । ଆଜି ତାଙ୍କର ସବୁ ଯେମିତି ଓଲଟ ପାଲଟ ହୋଇ ଯାଇଛି । କେବଳ ମନେ ପଡ଼ୁଛି ଟୁଣୁକାର ଗୀତ, ପାପ ପୁଣ୍ୟ ମଧ୍ୟେ ତୁମେ ଅଛ ପ୍ରଭୁ ତେଣୁ ସବୁ ଅଟେ ଭଲ ଯେ…ସବୁ ଆଜି ତାଙ୍କୁ ବୈଚିତ୍ର୍ୟମୟ, ସୁନ୍ଦର ଲାଗୁଛି । ଏହି ବୈଚିତ୍ର୍ୟ ଯାହାଙ୍କର ସୃଷ୍ଟି ତାଙ୍କ ପାଦତଳେ ଲୋଟିଯିବାକୁ ଉଦ୍‌ବେଗ ହେଉଛି । ସମସ୍ତଙ୍କ ପାଦ ଧରି କହିବାକୁ ଇଚ୍ଛା ହେଉଛି, ତୁମେ ଭଲ, ତୁମେ ଭଲ…



ଜୟପୁର ବିକାଶ ପ୍ରେସରେ ଶ୍ରୀ ରାମନାଥ ପଣ୍ଡାଙ୍କ ଦ୍ୱାରା ମୁଦ୍ରିତ ।